VOL. LI No. 2 UTKAL PRASANGA
Licence No. C.R.N.P. 5—Licensed to post without Pre-payment Regd. No. O—BN—05/



ପି: ଏମ୍: ଜି: ଛକଠାରେ ସ୍ୱାୟତ୍ତ ଶାସନ ଦିବସ ଉପଲକ୍ଷେ ଭୁବନେଶ୍ୱର ନଗରପାଳିକା ମହାନିଗମ ଆନୁକୂଲ୍ୟରେ ଆୟୋଜିତ ଏକ ଜନ ସମାବେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅଭିଭାଷଣ ଦେଉଛନ୍ତି ।



ଭଦ୍ରକଠାରେ ସ୍ୱାୟତ୍ତ ଶାସନ ଦିବସ ଉପଲକ୍ଷେ ଭଦ୍ରକ ନଗର ପାଳିକା ଦ୍ୱାରା ଆୟୋଜିତ ଏକ ସଭାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଅଭିଭାଷଣ ଦେଉଛନ୍ତି । ଶ୍ରମ ଓ ନିଯୁକ୍ତି ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଉପସ୍ଥିତ ଅଛନ୍ତି ।

PRINTED AT ORISSA GOVERNMENT PRESS, MADHUPATNA, CUTTACK-753 010



ଓଡ଼ିଶା ବିଧାନ ସଭା ପରିସର ମଧ୍ୟରେ ଥିବା ମହାତ୍ମା ଗାନ୍ଧୀଙ୍କ ପ୍ରତିମୂର୍ତ୍ତି ନିକଟରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଓ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପୁଷ୍ପାଞ୍ଜଳି ଅର୍ପଣ କରୁଛନ୍ତି ।



ବ୍ରହ୍ମପୁରଠାରେ ଭାରତ ଛାଡ଼ ଆନ୍ଦୋଳନ ରାଜ୍ୟ ସୁବର୍ଣ୍ଣ ଜୟନ୍ତୀ ପାଳନ କମିଟି ଆନୁକୂଲ୍ୟରେ ଆୟୋଜିତ ଏକ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

୫୧ ଭାଗ ୩ୟ ସଂଖ୍ୟା ଆଶ୍ୱିନ ୧୯୧୬ ଶକାବ୍ଦ ଅକ୍ଟୋବର ୧୯୯୪

## ସମ୍ପାଦକ ମଣ୍ଡଳୀ



ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦

ପ୍ରକାଶକ

**ଶ୍ରୀ ସୁରସେନ ଜେନା, ନିର୍ଦ୍ଦେଶକ**

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର

ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦

*ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଯୋଜନା ଓ ଅନ୍ୟାନ୍ୟ ସରକାରୀ ନୀତି ସମ୍ପର୍କିତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ। ଏହା ବ୍ୟତୀତ ଅନେକ ବିଷୟ ସମ୍ପର୍କିତ ଆଲୋଚନା ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ। ସେହିସବୁ ବିଷୟକୁ ଉତ୍କୃଷ୍ଟ ଓ ଅନୁମୋଦିତ ଲୁଚି ପାଠ କୋଣି ମାଧ୍ୟମ ଅଛି ପୁରୀ।*

*"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରକାଶିତ। ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ଭାବିବାକୁ ହେବ ନାହିଁ।*

ସୂଚୀପ୍ରସଙ୍ଗ

# ସୂଚୀ


| | | |
|---|---|---|
| ମ୍ୟୁନିସିପାଲ୍ ଶାସନରେ ବୈପ୍ଳବିକ ପରିବର୍ତ୍ତନ | ୧ | ଶ୍ରୀ ନଳିନୀକାନ୍ତ ମହାନ୍ତି |
| ଗାନ୍ଧିଜୀ – ଆସ ଶକ୍ତିର ପ୍ରତୀକ | ୩ | ସୁରେଶ ଚନ୍ଦ୍ର ସ୍ୱାଇଁ |
| ଉନ୍ନତ କୃଷି ଯନ୍ତ୍ରପାତି – ଏକ ଗଣ ଆନ୍ଦୋଳନ | ୬ | ଡଃ ସତ୍ୟାନନ୍ଦ ସ୍ୱାଇଁ |
| ପଶ୍ଚିମ ଓଡ଼ିଶାର ପ୍ରଧାନ ପର୍ବ ନୂଆଖାଇ | ୮ | ରାମ ପ୍ରସାଦ ପୁରୋହିତ |
| ଗାନ୍ଧିଜୀଙ୍କର ଧର୍ମ ଚେତନା | ୧୦ | ବିଜୟ କୁମାର ଦାଶ |
| ଏକ ବହୁ ଚର୍ଚ୍ଚିତ ଚିନ୍ତନ | ୧୪ | ରମେଶ ଚନ୍ଦ୍ର ରଥ |
| ଶରତର ଆଗମନୀ ଓ ଉତ୍କଳର ପର୍ବପର୍ବାଣି | ୧୫ | ଶ୍ରୀ ସତ୍ୟବ୍ରତ ମନ୍ତ୍ରୀ |
| ସମ୍ବଲପୁରର ଶୀତଳଷଷ୍ଠୀ ପର୍ବ | ୧୭ | ଡଃ ଚିତ୍ରସେନ ପଶାୟତ |
| ଟୀକାକାର ଶ୍ରୀଧର ସ୍ୱାମୀ | ୧୯ | ଡକ୍ଟର ମନ୍ମଥ କୁମାର ପ୍ରଧାନ |
| ଅର୍ଶ ରୋଗରୁ ମୁକ୍ତି ପାଇବେ କିପରି ? | ୨୧ | ଡାକ୍ତର ଦୀନବନ୍ଧୁ ମହାରଣା |
| ସୁଭଦ୍ରା : ଯୋଗମାୟା | ୨୩ | ଇଞ୍ଜିନିୟର୍ ରଘୁନାଥ ପାଟ୍ର |
| କରୁଣାମୟୀ ମାଆ | ୨୪ | ଶ୍ରୀ ନୃସିଂହ ଚରଣ ପରୀକ୍ଷା |
| ପ୍ରକୃତି ବନାମ ଶକ୍ତି | ୨୬ | ଶ୍ରୀ ଗୌରହରି ରାଉତ |
| ଜଗତ ଜନନୀ ମାଆ | ୨୭ | ଶ୍ରୀ ସତୀଶ ପାଟ୍ର |
| ଅବତରି ଆସ ଜଗତ ଜନନୀ | ୨୮ | ହରିହର ନନ୍ଦ |
| ମା' | ୨୯ | ଅଧ୍ୟାପକ ଡଃ ଶଶଧର ଦାସ |
| ବିମଳା କମଳମାଳା ସ୍ତୋତ୍ରମ୍ | ୩୦ | ପଣ୍ଡିତ ବେଣୁଧର ପରିଡ଼ା |
| ଶ୍ରଦ୍ଧାଞ୍ଜଳି | ୩୧ | ଶ୍ରୀମତୀ ସୁଭଲକ୍ଷ୍ମୀ ମହାନ୍ତି |
| ପାର୍ବଣ | ୩୨ | ବନପ୍ରଭା ପରିଡ଼ା |
| ତମେ ଆସ | ୩୩ | ଡଃ ପ୍ରମୋଦ କୁମାର ଭୂୟାଁ |
| କର୍ଣ୍ଣଧାର | ୩୪ | ଅକ୍ଷୟ କୁମାର ଜେନା |
| ଶହୀଦ ସ୍ତମ୍ଭ | ୩୫ | ଶ୍ରୀ କୃଷ୍ଣଚନ୍ଦ୍ର ରଥ |
| ଦୁର୍ଗାମାତା ଦେଉ ଦେଶ ଜନତାଙ୍କୁ ଶକ୍ତି | ୩୬ | ଡଃ ବୃନ୍ଦାବନ ପଣ୍ଡା |
| ଆସ ବ୍ୟବସାୟ | ୩୭ | ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି |
| ସମ୍ବାଦ ପରିକ୍ରମା | ୩୯ | |




## ଦୁର୍ଗତି ନାଶିନୀ ଦୁର୍ଗା

ଜଗତ ଜନନୀ ମା' ଦୁର୍ଗାଙ୍କର ପୂଜା ଉତ୍ସବ ଏହି ମାସରେ । ପ୍ରଚଳିତ ବିଭିନ୍ନ ପର୍ବ ମଧ୍ୟରେ ଏହି ଦୁର୍ଗା ପୂଜା ଉତ୍ସବ ଏକ ସାର୍ବଜନୀନ ପର୍ବ । ଏଥିପାଇଁ ଜାତିର ବିଚାର ନାହିଁ କି ବୟସର ବିଚାର ନାହିଁ । ସବୁ ଜାତିର ଓ ସବୁ ଶ୍ରେଣୀର ସ୍ତ୍ରୀ ପୁରୁଷ ଏହି ପୂଜା ଉତ୍ସବରେ ଭାଗ ନେଇ ଆନନ୍ଦ ଅନୁଭବ କରିଥାନ୍ତି । ନିଷ୍ଠାର ସହ ଘରେ ଘରେ ଏହି ପୂଜା ପାଳିତ ହେବା ସଙ୍ଗେ ସଙ୍ଗେ ମିଳିତ ଭାବେ ମଧ୍ୟ ସାହି–ବଜାରମାନଙ୍କରେ ଏହି ପୂଜା ଉତ୍ସବ ଆଡ଼ମ୍ବରପୂର୍ଣ୍ଣ ଭାବରେ ପାଳିତ ହୋଇଥାଏ ।

ପୁରାଣରେ ବର୍ଣ୍ଣିତ ଅଛି, ମହିଷାସୁରକୁ ବଧ କରି ଦେବତାମାନଙ୍କୁ ଦୁର୍ଗତିରୁ ରକ୍ଷା କରିଥିବାରୁ ଦେବତାମାନେ ଏହି ଦୁର୍ଗତି ନାଶିନୀଙ୍କୁ ଦୁର୍ଗା ବୋଲି ନାମ କରଣ କରିଥିଲେ । ସୁତରାଂ, ଆମେ ମଧ୍ୟ ଆମର ସବୁ ଦୁର୍ଗତିରୁ ରକ୍ଷା ପାଇବା ପାଇଁ ସେହି ଦୁର୍ଗତି ନାଶିନୀ ମା' ଦୁର୍ଗାଙ୍କ ପୂଜା ଉତ୍ସବ କରିଥାଉ । ସ୍ମରଣଯୋଗ୍ୟ ଯେ, ଦେବତାମାନଙ୍କ ଦ୍ୱାରା ସାଧନ ହୋଇ ପାରି ନଥିବା ଅସାଧ କାର୍ଯ୍ୟକୁ ମା' ଦୁର୍ଗା ସାଧନ କରି ଜଗତରେ ଶାନ୍ତି ପ୍ରତିଷ୍ଠା କରିଥିଲେ । ସେଥିପାଇଁ ଦୁର୍ଗତି ନାଶିନୀ ମା' ଦୁର୍ଗାଙ୍କୁ ଆମେ ଜଗତ ଜନନୀ ବୋଲି ମଧ୍ୟ କହିଥାଉ । ଏ ସବୁ ପୁରାଣ ବର୍ଣ୍ଣିତ ସତ୍ୟ ଯୁଗର ଘଟଣା । ପରେ ପରେ ତ୍ରେତୟା ଯୁଗରେ ରାବଣର ବିନାଶ ପାଇଁ ମା' ସୀତା ଦେବୀ ମଧ୍ୟ ପ୍ରମୁଖ ଭୂମିକା ନେଇଥିଲେ ।

ସେହିପରି ଦ୍ୱାପର ଯୁଗରେ କୌରବଙ୍କୁ ନିପାତ କରିବା ପାଇଁ ଦ୍ରୌପଦୀ ହିଁ ପ୍ରେରଣାର ଉତ୍ସ ହୋଇଥିଲେ । ସବୁ ଯୁଗରେ, ସବୁ ସମୟରେ ନାରୀର ପ୍ରାଧାନ୍ୟ, ନାରୀର ଗୁରୁତ୍ୱ ବଜାୟ ରହିଥିବା ବେଳେ ସମସ୍ତ ସ୍ରୋତରେ ନାରୀ ପରଦା ଅନ୍ତରାଳରେ ରହିଗଲା । ସମାଜରେ ନାରୀର ସ୍ଥାନ ଏକ ଅନାବଶ୍ୟକ ଆବଶ୍ୟକତା ହୋଇ ପୁରୁଷର ବିଳାସ ସାମଗ୍ରୀ ରୂପେ ନାରୀକୁ କୋଠରୀର ଚାରିକାନ୍ଥ ଭିତରେ ଆବଦ୍ଧ କରି ଦିଆଗଲା ।

ଜଗତ ଜନନୀ ମା' ଦୁର୍ଗାଙ୍କ ଆଶୀର୍ବାଦ ନେଇ ଆମର ବରେଣ୍ୟ ନେତା ବିଜୁବାବୁ ଆଜି ସେ ଅବସ୍ଥାର ପରିବର୍ତ୍ତନ ଘଟାଇ ପାରିଛନ୍ତି । ଫଳରେ ମହିଳାମାନେ ଆଉ କୋଠରୀର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ନରହି ସମାଜରେ ଏକ ପରିବର୍ତ୍ତନ ଆଣିବା ପାଇଁ ପ୍ରତ୍ୟେକ ସ୍ତରରେ ନେତୃତ୍ୱ ନେବାର ସୁଯୋଗ ପାଇ ପାରିଛନ୍ତି । ବିଜୁବାବୁଙ୍କ ଏହି ବୈପ୍ଳବିକ ପଦକ୍ଷେପ ସମଗ୍ର ଭାରତବାସୀଙ୍କୁ ଆଜି ମାର୍ଗ ଦର୍ଶନ ଦେଇ ପାରିଛି । ସର୍ବ ଭାରତୀୟ ସ୍ତରରେ ମଧ୍ୟ ବିଜୁବାବୁଙ୍କ ଏହି ନୀତିକୁ ଅନୁକରଣ କରି ମହିଳାମାନଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ବିଭିନ୍ନ ସୁବିଧା ଦେବା ନିମନ୍ତେ ଆଇନ ପ୍ରଣୟନ ହେବାରେ ଲାଗିଛି । ସମାଜରେ ଏକ ସାମୁହିକ ପରିବର୍ତ୍ତନ ପାଇଁ ମହିଳାମାନଙ୍କ ଗୁରୁତ୍ୱ ବଢ଼ାଇବା ଦିଗରେ ବିଜୁ ବାବୁଙ୍କର ଏହି ପଦକ୍ଷେପ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ସେଥିରେ ସନ୍ଦେହ ନାହିଁ ।

ଜଗତ୍ ଜନନୀ ମା' ଦୁର୍ଗା ଏ କ୍ଷେତ୍ରରେ ଆଶୀର୍ବାଦ ବୃଷ୍ଟି କରନ୍ତୁ, ଆମ ସମାଜ ଏକ ନୂଆ ରୂପ ନେଇ ଗଢ଼ି ଉଠୁ – ଏହା ହିଁ ପବିତ୍ର ଦଶହରା ପୂଜା ଅବସରରେ ମା' ଦୁର୍ଗାଙ୍କ ନିକଟରେ ପ୍ରାର୍ଥନା ।

# ମ୍ୟୁନିସ୍‌ପାଲ୍ ଶାସନରେ ବୈପ୍ଳବିକ ପରିବର୍ତ୍ତନ

ନଳିନୀକାନ୍ତ ମହାନ୍ତି

ଭାରତବର୍ଷ ତଥା ଓଡ଼ିଶାର ଜନସାଧାରଣଙ୍କ ପାଇଁ ସ୍ୱାୟତ୍ତ ଶାସନ କିଛି ନୂଆ କଥା ନୁହେଁ । ଆବହମାନ କାଳରୁ ଗ୍ରାମେ ଗ୍ରାମେ ଲୋକମାନେ ନିଜେ ନିଜକୁ ଶାସନ କରିବା ପାଇଁ ପଞ୍ଚାୟତ ବା ନ୍ୟାୟପଞ୍ଚ ବହୁ ଆଗରୁ ରହି ଆସୁଥିଲା । ବହୁ ବର୍ଷ ଧରି ଭାରତବର୍ଷ ବିଦେଶୀମାନଙ୍କ ଶାସନାଧୀନରେ ରହିବା ଫଳରେ ଏହି ସଂସ୍ଥାଗୁଡ଼ିକ କ୍ରମେ କ୍ରମେ ଦୁର୍ବଳ ହୋଇ ଲୋପ ପାଇଗଲା । ଇଂରେଜ ସରକାରଙ୍କ ଶାସନ କାଳରେ ସ୍ୱାୟତ୍ତ ଶାସନ ନାମ ଧରି ଏହା ପୁଣି ପୁନର୍ଗଠିତ ହେଲା ।

ଜନତା ସରକାର ଶାସନକୁ ଆସିବା ପର୍ଯ୍ୟନ୍ତ ଓଡ଼ିଶାରେ ସ୍ୱାୟତ୍ତ ଶାସନ ଏକ ସ୍ଥାଣୁ ଓ ନିର୍ଜୀବ ଅବସ୍ଥାରେ ଥିଲା । ନାମକୁ ମାତ୍ର ପାଞ୍ଚ ବର୍ଷରେ ସହରାଞ୍ଚଳରେ ନିର୍ବାଚନ ମାଧ୍ୟମରେ ଲୋକ ପ୍ରତିନିଧିଙ୍କ ହସ୍ତରେ ଶାସନ ଭାର ଦେବା ପାଇଁ ଆଇନଗତ ବ୍ୟବସ୍ଥା ଥିଲେ ମଧ୍ୟ ଏହା ଠିକ ସମୟରେ କରା ନଯାଇ ବହୁ ବର୍ଷ ପର୍ଯ୍ୟନ୍ତ ନିର୍ବାଚନକୁ ଘଡ଼ାଇ ଦିଆଯାଉଥିଲା । ଆମର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ସ୍ୱାୟତ୍ତ ଶାସନ ପଦ୍ଧତିରେ ଐତିହାସିକ ପରିବର୍ତ୍ତନ ଅଣାଗଲା । ସେଗୁଡ଼ିକ ହେଲା :

ସମସ୍ତ ଜନସଂଖ୍ୟାର ନାରୀ ସଂଖ୍ୟା ପ୍ରାୟ ଅର୍ଦ୍ଧେକ ହୋଇଥିଲେ ମଧ୍ୟ ଏମାନଙ୍କ ପାଇଁ ସ୍ୱାୟତ୍ତ ଶାସନ ପ୍ରକ୍ରିୟାରେ ଭାଗ ନେବା ପାଇଁ ଆଗରୁ କେବେ କୌଣସି ପ୍ରଚେଷ୍ଟା ହୋଇନଥିଲା । ମାତ୍ର ଆମ ସରକାର ସ୍ୱାୟତ୍ତ ଶାସନ ନିର୍ବାଚନରେ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ କରିବା ପାଇଁ ସ୍ୱାୟତ୍ତ ଶାସନ ଆଇନରେ ପରିବର୍ତ୍ତନ ଅଣାଇଲେ । ଏହା ଫଳରେ ମ୍ୟୁନିସିପାଲ କର୍ପୋରେସନ୍, ମ୍ୟୁନିସିପାଲିଟି, ଅଧିସୂଚିତ କ୍ଷେତ୍ର ପରିଷଦମାନଙ୍କରେ ନାରୀମାନଙ୍କ ନିମନ୍ତେ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ କରାଯାଇ ନିର୍ବାଚନ କରାଯାଇଅଛି । ଏତଦ୍ ବ୍ୟତୀତ ଯେଉଁ ପୌର ସଂସ୍ଥାରେ ଚେୟାରମ୍ୟାନ୍ କିମ୍ବା 'ଭାଇସ୍ ଚେୟାରମ୍ୟାନ୍‌ଙ୍କ ମଧ୍ୟରୁ ଜଣେ ଯଦି ନାରୀ ନ ହୋଇଥାନ୍ତି ତେବେ ଏକ ଅତିରିକ୍ତ ଭାଇସ୍ ଚେୟାରମ୍ୟାନ୍ ପଦବୀ ସୃଷ୍ଟି କରି ସେହି ପଦବୀରେ ଜଣେ ନାରୀଙ୍କୁ ଅବସ୍ଥାପିତ୍ କରାଯାଇଅଛି ।

ନାରୀମାନଙ୍କୁ ନିର୍ବାଚନରେ ସ୍ୱତନ୍ତ୍ର ଅଧିକାର ଦେବା ପାଇଁ ଓଡ଼ିଶା ସରକାରଙ୍କର ହେଉଛି ଭାରତବର୍ଷରେ ସର୍ବ ପ୍ରଥମ ପରିକଳ୍ପନା । ଏହାକୁ ଭିତ୍ତି କରି ଭାରତ ସରକାର ବହୁ ପରେ ସମ୍ବିଧାନର ୭୪ତମ ସଂଶୋଧନ ପ୍ରକ୍ରିୟାରେ ଏହି ନାରୀମାନଙ୍କ ପାଇଁ ପୌର ସଂସ୍ଥାରେ ସ୍ଥାନ ସଂରକ୍ଷଣ ପ୍ରକ୍ରିୟାକୁ ସ୍ଥାନ ଦେଇ ଓଡ଼ିଶା ସରକାରଙ୍କ ଚିନ୍ତାଧାରାକୁ ଭାରତ ବର୍ଷର ସବୁ ରାଜ୍ୟରେ ପ୍ରବର୍ତ୍ତନ କରାଇଲେ ।

ଏତଦ୍ ବ୍ୟତୀତ ଅନୁସୂଚିତ ଜାତି, ଅନୁସୂଚିତ ଜନଜାତି, ଅନ୍ୟାନ୍ୟ ପଛୁଆ ବର୍ଗ ନାଗରିକ ଓ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ଓଡ଼ିଶା ସରକାର ପ୍ରଥମେ କରିଥିଲେ । ଭାରତ ସରକାର ୭୪ତମ ସମ୍ବିଧାନ ସଂଶୋଧନ ବଳରେ ଏହାକୁ ପ୍ରବର୍ତ୍ତିତ କରାଇ ତାହାକୁ ପର୍ଯ୍ୟାୟକ୍ରମେ କରାଇବାରେ ବ୍ୟବସ୍ଥା କଲେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଆମର ଚିନ୍ତାଧାରାକୁ ଭାରତ ସରକାର ଗ୍ରହଣ କରିଛନ୍ତି ।

ଏଠାରେ ସୂଚାଇଦେବା ଉଚିତ ମନେ ହୁଏ ଯେ ପୂର୍ବରୁ ପୌର ସଂସ୍ଥାର ଅଧ୍ୟକ୍ଷ ପ୍ରାୟ ସର୍ବମୟ କର୍ତ୍ତା ଥିଲେ । ମାତ୍ର ଆମ ଓଡ଼ିଶା ସରକାର ଏହି କ୍ଷମତାକୁ ପରିଷଦ ହାତରେ ସମ୍ପୂର୍ଣ୍ଣ ରୂପେ ନ୍ୟସ୍ତ କରିଅଛନ୍ତି । ପରିଷଦ ଚାହିଁଲେ ତାଙ୍କର କ୍ଷମତାକୁ ଅଧ୍ୟକ୍ଷ, ଉପାଧ୍ୟକ୍ଷ ଅଥବା ନିର୍ବାହୀ ଅଧିକାରୀଙ୍କୁ ପ୍ରତ୍ୟର୍ପଣ କରି କାର୍ଯ୍ୟ ସମ୍ପାଦନ କରାଇବେ । ଏ ପ୍ରକାର ବ୍ୟବସ୍ଥା ଭାରତ ସରକାରଙ୍କ ୭୪ତମ ସମ୍ବିଧାନ ସଂଶୋଧନ ବ୍ୟବସ୍ଥାରେ ନାହିଁ । ଏହା ହେଉଛି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନିଜସ୍ୱ ଚିନ୍ତାଧାରା ।

ସମ୍ବିଧାନ ସଂଶୋଧନ ଅନୁସାରେ ପ୍ରତି ପାଞ୍ଚ ବର୍ଷରେ ନିର୍ବାଚନ କରାଯିବା ବାଧ୍ୟତାମୂଳକ ହେଲା । ଉକ୍ତ ନିର୍ବାଚନ ରାଜ୍ୟ ସରକାରଙ୍କ ପରିବର୍ତ୍ତେ ନିର୍ବାଚନ କମିଶନଙ୍କ ଦ୍ୱାରା କରାଇବା ପାଇଁ ବ୍ୟବସ୍ଥା କରା ହୋଇଅଛି । ପ୍ରଚଳିତ ବ୍ୟବସ୍ଥାନୁଯାୟୀ ମ୍ୟୁନିସିପାଲିଟିଗୁଡ଼ିକୁ ନିଲମ୍ବନ ଓ ଅଧିଗ୍ରହଣ କରାଯାଇ ପାରିବ ନାହିଁ ମାତ୍ର ମ୍ୟୁନିସିପାଲିଟିମାନେ ମ୍ୟୁନିସିପାଲ୍ ଅଧିନିୟମ ଅନୁସାରେ ଯଦି କାମ ନକରନ୍ତି ସେମାନଙ୍କୁ ସରକାର ଭାଙ୍ଗି ଦେଇ ପାରିବେ ଏବଂ ଛ' ମାସ ମଧ୍ୟରେ ନିର୍ବାଚନ କରି ନିର୍ବାଚିତ ପ୍ରତିନିଧି ଆଣିବାର ବ୍ୟବସ୍ଥା କରିବେ । ପୂର୍ବରୁ ଅନୁସୂଚିତ ଜାତି, ଉପଜାତି ଓ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଥିଲା । କିନ୍ତୁ ଉକ୍ତ ବ୍ୟବସ୍ଥା ଅଧ୍ୟକ୍ଷମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ହେଉନଥିଲା । ପଛୁଆ ବର୍ଗର ନାଗରିକମାନଙ୍କ ପାଇଁ ଏହି ସଂରକ୍ଷଣ ବ୍ୟବସ୍ଥା ନଥିଲା ।

ପୂର୍ବ ମ୍ୟୁନିସିପାଲିଟି ଅଞ୍ଚଳ ମଧ୍ୟରେ ଉନ୍ନତିମୂଳକ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ୱାର୍ଡ କମିଟି ନଥିଲା । କିନ୍ତୁ ବର୍ତ୍ତମାନ ମ୍ୟୁନିସିପାଲ୍ ଆଇନକୁ ସଂଶୋଧନ କରି ସେହି ଅଞ୍ଚଳର ଉନ୍ନତିମୂଳକ କାର୍ଯ୍ୟ ପାଇଁ ୱାର୍ଡ କମିଟିମାନ ଗଠନ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ସେହିପରି ଜିଲ୍ଲାର ଉନ୍ନୟନ ନିମିତ୍ତ ଜିଲ୍ଲା ଯୋଜନା କମିଟି ଗଠନ କରାଯାଇଛି ।

ପୂର୍ବରୁ ମ୍ୟୁନିସିପାଲିଟିମାନଙ୍କ ପାଇଁ ଅର୍ଥ କମିଶନ ଗଠନ ବ୍ୟବସ୍ଥା ନଥିଲା । ବର୍ତ୍ତମାନ ମ୍ୟୁନିସପାଲ୍ ଆଇନକୁ ସଂଶୋଧନ କରି ଅର୍ଥ କମିଶନ ଗଠନ କରାଯିବା ନିମିତ୍ତ ବ୍ୟବସ୍ଥା ରହିଛି । ଏହି ଅର୍ଥ କମିଶନ ଟିକସ, ଶୁଳ୍କ ଇତ୍ୟାଦିରୁ ମିଳୁଥିବା ଆୟକୁ ରାଜ୍ୟ ଓ ମ୍ୟୁନିସିପାଲିଟି ମଧ୍ୟରେ ସୁଷମ ବଣ୍ଟନ, ଟିକସ, ଶୁଳ୍କ ଇତ୍ୟାଦି ନିର୍ଦ୍ଧାରଣ, ସଞ୍ଚିତ ନିଧିରୁ ମ୍ୟୁନିସିପାଲିଟିଗୁଡ଼ିକୁ ସହାୟକ ଅନୁଦାନ ପ୍ରଦାନ ଇତ୍ୟାଦି ବିଷୟ ସମୀକ୍ଷା କରି ରାଜ୍ୟପାଳଙ୍କୁ ସୁପାରିଶ କରିବେ ।

ସେହିପରି ପୂର୍ବରୁ ପୌରାଞ୍ଚଳର ନିର୍ବାଚନରେ କୌଣସି ଦଳର ସଙ୍କେତ ଦିଆ ନହୋଇ ପ୍ରାର୍ଥୀମାନେ ନିର୍ବାଚନ ଲଢୁଥିଲେ । ମାତ୍ର ଏହା ନିଭାଟ ସତ୍ୟ କଥା ଯେ ଯଦିଓ କୌଣସି ଦଳର ସଙ୍କେତ ନଥାଇ ପୌର ପରିଷଦର ନିର୍ବାଚନ କରାଯାଉଥିଲା, ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାର୍ଥୀମାନେ କୌଣସି ନା କୌଣସି ଦଳର ସକ୍ରିୟ ସଭ୍ୟ ରହୁଥିଲେ । ଓଡ଼ିଶା ସରକାର ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ପ୍ରଥମେ ନିଷ୍ପତ୍ତି ନେଲେ । ଏହା ଫଳରେ ନିର୍ବାଚନରେ ଲଢୁଥିବା ପ୍ରାର୍ଥୀମାନେ ନିର୍ବାଚିତ କରିଥିବା ଭୋଟରମାନଙ୍କ ପାଖରେ ପୂର୍ଣ୍ଣମାତ୍ରାରେ ଚିହ୍ନିତ ହେବା ଫଳରେ ଭୋଟରମାନେ ତାଙ୍କର ନିର୍ଦ୍ଦିଷ୍ଟ ମତ ଦେଇ ନିର୍ବାଚିତ କରିବା ପାଇଁ ପୂର୍ଣ୍ଣ ସକ୍ଷମ ହୋଇ ପାରିଛନ୍ତି ।

ପୂର୍ବରୁ ଅଧ୍ୟକ୍ଷଙ୍କ ବିରୁଦ୍ଧରେ ଯେ କୌଣସି ସମୟରେ ଅନାସ୍ଥା ପ୍ରସ୍ତାବ ଆଣି ତାଙ୍କୁ ପୌର ଅଧ୍ୟକ୍ଷ ପଦରୁ ବହିଷ୍କାର କରିବା ପାଇଁ ବିଧାନ ଥିଲା । ଏହା ଫଳରେ ଜଣେ ଅଧ୍ୟକ୍ଷ ନିର୍ବାଚିତ ହେବାର ସ୍ୱଳ୍ପ ସମୟ ମଧ୍ୟରେ ମଧ୍ୟ ସେହି ଆସନରୁ ବହିଷ୍କାର ହୋଇ ପାରୁଥିଲେ । ଏହା ବିଧିସଙ୍ଗତ ନୁହେଁ । କାରଣ କୌଣସି ଅଧ୍ୟକ୍ଷଙ୍କର କାର୍ଯ୍ୟ ଦକ୍ଷତା ସ୍ୱଳ୍ପ ସମୟ ମଧ୍ୟରେ ନିର୍ଦ୍ଦିଷ୍ଟ ଭାବରେ ସୂଚିତ ହୋଇପାରିବା ସମ୍ଭବପର ନୁହେଁ । ସେଥିପାଇଁ ଓଡ଼ିଶା ସରକାର ଅଧ୍ୟକ୍ଷ ନିର୍ବାଚିତ ହେବାର ଦୁଇ ବର୍ଷ ମଧ୍ୟରେ ତାଙ୍କ ବିରୁଦ୍ଧରେ କୌଣସି ଅନାସ୍ଥା ପ୍ରସ୍ତାବ ଆସି ପାରିବ ନାହିଁ ବୋଲି ଆଇନ ପ୍ରଣୟନ କଲେ । ଏହା ଫଳରେ ଜନସାଧାରଣ ଯେଉଁ ବ୍ୟକ୍ତିଙ୍କୁ ଅଧ୍ୟକ୍ଷ ଭାବରେ ନିର୍ବାଚିତ କରିଛନ୍ତି ତାଙ୍କୁ ତାଙ୍କର କାର୍ଯ୍ୟ କୁଶଳତା ଅଥବା ଜନସାଧାରଣଙ୍କର କଲ୍ୟାଣକାରୀ ଯୋଜନା କାର୍ଯ୍ୟକାରୀ କରିବାର ଦକ୍ଷତା ପ୍ରମାଣ କରିବା ପାଇଁ ଦୁଇ ବର୍ଷ ସମୟ ସୀମା ଯୋଗାଇ ଦିଆଯାଇ ପାରିଛି ।

ବର୍ତ୍ତମାନର ସରକାର ଆସିବା ପୂର୍ବରୁ ପୌର ସଂସ୍ଥାମାନଙ୍କରେ ନିର୍ବାହୀ ଅଧିକାରୀମାନେ ଅଂଶ ଗ୍ରହଣ କରିବା ପାଇଁ ଆଇନଗତ ବ୍ୟବସ୍ଥା ନଥିଲା । ଏହା ଫଳରେ ପରିଷଦରେ ଗୃହୀତ ହେଉଥିବା ପ୍ରସ୍ତାବମାନ ବେଳେ ବେଳେ ଆଇନ ବହିର୍ଭୂତ ହେଉଥିଲା । ତେଣୁକରି ଓଡ଼ିଶା ସରକାର ପରିଷଦ ବୈଠକରେ ନିର୍ବାହୀ ଅଧିକାରୀ ଉପସ୍ଥିତ ରହିବା ପାଇଁ ଆଇନ୍ ପ୍ରଣୟନ କଲେ । ଏହା ଫଳରେ ପରିଷଦ ଦ୍ୱାରା ଗୃହୀତ ପ୍ରସ୍ତାବରେ କୌଣସି ତ୍ରୁଟି ବିଚ୍ୟୁତି ନରହିବା ପାଇଁ ସୁଗମ ବ୍ୟବସ୍ଥା ହୋଇ ପାରିଅଛି । କାରଣ ନିର୍ବାହୀ ଅଧିକାରୀ ଆଇନ କାନୁନ୍ ଉପରେ ଦକ୍ଷ ଥିବାରୁ ସେ ପରିଷଦକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେଖାଇ ଗୃହୀତ ପ୍ରସ୍ତାବଗୁ ଆଇନ ଅନୁମୋଦିତ କରି ପାରିବେ ।

ପୌର ପାଳିକାଗୁଡ଼ିକରେ କାର୍ଯ୍ୟରତ ଥିବା କର୍ମଚାରୀମାନ ପାଇଁ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିମନ୍ତେ କୌଣସି ଆଇନ କାନୁ ପ୍ରଣୟନ ହୋଇ ନଥିଲା । ଏହା ଫଳରେ କୌଣସି ପୌ ପାଳିକାରେ କୌଣସି କର୍ମଚାରୀ ଉଚ୍ଛୃଙ୍ଖଳ ଆଚରଣ କରି ପଳାଇ ନଥିଲେ । ଏହି ସରକାର ଆସିବା ପରେ ପୌ ପାଳିକାର କର୍ମଚାରୀମାନଙ୍କ ପାଇଁ ଆଚରଣ ବିଧି ଓଡ଼ି ସରକାରଙ୍କ କର୍ମଚାରୀମାନଙ୍କ ପାଇଁ ଯାହା ପ୍ରଯୁଜ୍ୟ ସେମାନ ପାଇଁ ତାହା ଲାଗୁ କରାଇଲେ । ଏହା ଫଳରେ ପୌର ପାଳିକା କର୍ମଚାରୀମାନେ ସୁଶୃଙ୍ଖଳିତ ହୋଇ ଆନୁଗତ୍ୟ ପୂର୍ବକ କାର୍ଯ୍ୟ ନିର୍ବାହ ସୁଚାରୁ ରୂପେ କରିବାରେ ସହାୟକ ହୋଇଅଛି ।

କୌଣସି ପୌର କର୍ମଚାରୀ ଅବସର ନେବା ପୂର୍ବରୁ ଅକାଳ ବିୟୋଗ ହେଲେ ତାଙ୍କର ପୁତ୍ର ଅଥବା କନ୍ୟା କିମ୍ବା ସ୍ତ୍ରୀଙ୍କୁ ନିଯୁକ୍ତି ଦେଇ ପରିବାରକୁ ସ୍ୱୟଂ ସ୍ୱଚ୍ଛଳ କରିବା ପାଇଁ କୌଣସି ଆଇନ ନଥିଲା । ଆମ ସରକାର ଆସିବା ପରେ ଏହା ଏକାନ୍ତ ପ୍ରଯୁଜ୍ୟ ଓ ଅନିବାର୍ଯ୍ୟ ମନେ କରି ଓଡ଼ିଶାର ସରକାରୀ କର୍ମଚାରୀମାନଙ୍କ ପାଇଁ ପ୍ରଯୁଜ୍ୟ ପୁନର୍ବସତି ଯୋଜନାକୁ ପୌର କର୍ମଚାରୀମାନଙ୍କ ପ୍ରତି ଲାଗୁ କରାଇ ପାରିଛନ୍ତି । ଏହା ଫଳରେ ଅକାଳ ମୃତ୍ୟୁବରଣ କରିଥିବା ପୌର କର୍ମଚାରୀମାନଙ୍କର ପରିବାର ଥଇଥାନ ହେବାର ବ୍ୟବସ୍ଥା ସୁଗମ ହୋଇ ପାରିଅଛି ।

ଆମ ସରକାର ଆସିବା ପୂର୍ବରୁ କନିଷ୍ଠ ଯନ୍ତ୍ରୀମାନେ ପୌର ପାଳିକାରେ ପଦୋନ୍ନତି ପାଇବାରେ କୌଣସି ଆଇନଗତ ବ୍ୟବସ୍ଥା ନଥିଲା । ସେଥିପାଇଁ ସେମାନେ କାର୍ଯ୍ୟ କରିବା ପାଇଁ କୌଣସି ପ୍ରୋତ୍ସାହନ ପାଉନଥିଲେ । ସେଥିପାଇଁ ସରକାର ଏକ ଆଇନ ପ୍ରଣୟନ କରି ସେମାନଙ୍କୁ ସହାୟକ ଯନ୍ତ୍ରୀ ଏବଂ ନିର୍ବାହୀ ଯନ୍ତ୍ରୀ ପର୍ଯ୍ୟନ୍ତ ପଦୋନ୍ନତି ପାଇବାର ବ୍ୟବସ୍ଥା କରିଛନ୍ତି ।

ସର୍ବୋପରି ବହୁ କାଳରୁ ଭୁବନେଶ୍ୱର ଓ କଟକ ପୌର ସଂସ୍ଥାକୁ କର୍ପୋରେସନ୍ ମାନ୍ୟତା ଦେବା ପାଇଁ ଜନସାଧାରଣ ଦାବୀ କରି ଆସୁଥିଲେ । କଟକ ଓ ଭୁବନେଶ୍ୱର ପୌର ପାଳିକା କର୍ପୋରେସନ୍ ହେବା ଏକାନ୍ତ ଜରୁରୀ ହୃଦୟଙ୍ଗମ କରି ଆମ ସରକାର ଏହି ଦୁଇଟି ମ୍ୟୁନିସିପାଲିଟିକୁ ମୁନିସିପାଲ୍ କର୍ପୋରେସନ୍‌ରେ ଗତ ସ୍ୱାଧୀନତା ଦିବସ ଅଥବା ଅଗଷ୍ଟ ପନ୍ଦର ତାରିଖଠାରୁ ବିଧିବଦ୍ଧ ଭାବରେ ପରିଣତ କରିଛନ୍ତି ।

ଭାରତୀୟ ଗଣତନ୍ତ୍ରରେ ଲୋକମାନଙ୍କୁ ନିଜକୁ ନିଜେ ଶାସନ କରିବାକୁ କ୍ଷମତା ଦେବାରେ ଓଡ଼ିଶା ହେଉଛି ସର୍ବ ପ୍ରଥମ । ବର୍ତ୍ତମାନ ଯେଉଁମାନେ ସ୍ୱାୟତ୍ତ ଶାସନ ସଂସ୍ଥାରେ ନିର୍ବାଚିତ ହୋଇଛନ୍ତି ସେମାନଙ୍କର କାର୍ଯ୍ୟ ଦକ୍ଷତା ଉପରେ ସ୍ୱାୟତ୍ତ ସଂସ୍ଥାର ଉନ୍ନତି ବା ଅବନତି ପୂର୍ଣ୍ଣମାତ୍ରାରେ ନିର୍ଭର କରେ । ଆଶା ଏବଂ ବିଶ୍ୱାସ ଯେଉଁ ଭାଇ ଭଉଣୀମାନେ ମ୍ୟୁନିସିପାଲ୍ କର୍ପୋରେସନ୍, ମ୍ୟୁନିସିପାଲିଟି ଅଥବା ବିଜ୍ଞାପିତ ଅଞ୍ଚଳମାନଙ୍କରେ ଶାସନ ଡୋରି ହାତକୁ ନେଇଛନ୍ତି ସେମାନେ ପ୍ରତ୍ୟେକ ଯଦି ନିଜ କର୍ତ୍ତବ୍ୟକୁ ସୁଷ୍ଠୁ ରୂପେ ପରିଚାଳନା କରିପାରିବେ ତେବେ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକ କ୍ରମେ ବଳିଷ୍ଠ ହେବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କର ଅଶେଷ ଉପକାର ହେବ ।

ପୂର୍ତ୍ତ, ଗୃହ ନିର୍ମାଣ ଓ ସହର ଉନ୍ନୟନ ବିଭାଗ ମନ୍ତ୍ରୀ ।

# ଗାନ୍ଧିଜୀ – ଆତ୍ମ ଶକ୍ତିର ପ୍ରତୀକ

ସୁରେଶ ଚନ୍ଦ୍ର ସ୍ୱାଇଁ

## ଭାରତର ଆତ୍ମା

ଭାରତର ଆତ୍ମା ଗାଁରେ ଅଛି । ଗାଁକୁ ମୂଳ ବୋଲି ଗାନ୍ଧୀ କହିଥିଲେ । ସାଧାରଣତଃ ଆତ୍ମା ପରମାତ୍ମା କଥା ସାଧୁ, ସନ୍ଥ, ସନ୍ନ୍ୟାସୀ ଯୋଗୀ ସଂସାର ପରିତ୍ୟକ୍ତ ବ୍ୟକ୍ତିମାନେ କହିଥିବାର ସାଧାରଣରେ ପ୍ରଚଳିତ । ମାତ୍ର ଏଇ ବାଣୀ ବ୍ୟବହାର କରି ସେ ହେଲେ ମହାତ୍ମା । ସେ ତ ନିଜକୁ ମହାତ୍ମା କହି ନଥିଲେ । ମନେ ପଡ଼େ ଗାନ୍ଧିଜୀଙ୍କର ନିଜ କଥା । ୧୯୨୭ ମସିହା ସୋଲାପୁରରେ ସେ କହିଥିଲେ "ମୁଁ ଜଣେ ମହାତ୍ମା ନୁହେଁ । ଯଦି ହୋଇଥାଏ, ତାହା ହେଲେ ମହାତ୍ମା ପଦ ଗୋଟିଏ ଶକ୍ତିର ସୂଚକ ।..............ଆପଣମାନଙ୍କ ପରି ମୁଁ ଗୋଟିଏ ମନୁଷ୍ୟ ପାତ୍ର । ରକ୍ତ ମାଂସ ଦେହର ସମସ୍ତ ସ୍ନେହ ଓ ପ୍ରବୃତ୍ତି ମୋଠାରେ ମଧ୍ୟ ଅଛି" । ଆତ୍ମା ଗାଁରେ ଅଛି – ଏହା ଏକ ପ୍ରତୀକାତ୍ମକ ସୂଚନା ମାତ୍ର । ଶକ୍ତି ଦର୍ଶନ ପାଇଁ ପ୍ରେରଣାତ୍ମକ ସୂଚନା । ସତରେ କହିଲେ ମୁଁ ଜଣେ ସତ୍ୟାଗ୍ରହୀ । ସତ୍ୟ ହିଁ ଈଶ୍ୱର – ଈଶ୍ୱର ହିଁ ସତ୍ୟ ମୋ ପାଇଁ ଅଧିକ ବାସ୍ତବ ସତ୍ୟ ।

ଭାରତର ଆତ୍ମା ଅର୍ଥାତ୍ ଭାରତୀୟ ସଂସ୍କୃତି, ଧର୍ମ, ଐତିହ୍ୟ ପରମ୍ପରା–ସର୍ବବିଧ ନୀତି, ଗତି ପ୍ରଗତି, ସମୃଦ୍ଧିର ପ୍ରାଣସତ୍ତା, ଦିବ୍ୟତା, ଚିନ୍ତା ଚେତନା, ସତ୍ୟ ଓ ପ୍ରେରଣାର ମୂଳ କେନ୍ଦ୍ର ଗାଁରେ ଅଛି । ଏହାର ଅର୍ଥ କଦାପି ନୁହେଁ ଯେ ଆତ୍ମା ସହରରେ ନାହିଁ । ସର୍ବତ୍ର ଆତ୍ମ ସତ୍ତା, ସତ୍ୟ ସତ୍ତା, ଦିବ୍ୟତା ବିଦ୍ୟମାନ । ମାତ୍ର ତାର ସହଜ ସରଳ ଅନୁଭୂତି ଗାଁରେ ହୋଇପାରିବ ବୋଲି ସେ ସତ୍ୟାଗ୍ରହୀ, ସଂଗ୍ରାମୀ ସେବକମାନଙ୍କୁ ଗ୍ରାମ ସେବକ ହେବାକୁ ସତ୍ୟାଗ୍ରହୀ ସେ ଆହ୍ୱାନ ଦେଉଥିଲେ । ସ୍ୱେଚ୍ଛାରେ ସମାଜ ପାଇଁ ନିଜକୁ ବଳି ଦେବା ପ୍ରକୃତ ପରାକ୍ରମୀର ଲକ୍ଷଣ ।

## ଆତ୍ମାର ଖାଦ୍ୟ

ଗାନ୍ଧିଜୀଙ୍କ ଭାଷାରେ ପ୍ରାର୍ଥନା ହିଁ ଆତ୍ମାର ଖାଦ୍ୟ । ୨-୨-୧୯୪୮ର ଉତ୍ତର ପ୍ରଦେଶର (ସେତେବେଳର ଯୁକ୍ତ ପ୍ରଦେଶର) ଏକ ହରିଜନ ସମ୍ମିଳନୀରେ ସେ ଏ କଥା କହିଥିଲେ ଓ ଆଉ ବାର ସେ ଏଇ ସତ୍ୟ ଉଦ୍‌ଘୋଷଣା କରିଥିଲେ । ଏଇ ଆତ୍ମା ସର୍ବ ବ୍ୟାପକ । ଅନାମ, ନିରାକାର, ଅବର୍ଣ୍ଣନୀୟ ସର୍ବ ଶକ୍ତିମାନ । ଯଦି ଶକ୍ତି ଥାଏ, ତେବେ ତାଙ୍କୁ ସର୍ବସ୍ୱ–ଦରିଦ୍ର କୁଟୀରରେ, ରାଜା–ପ୍ରାସାଦରେ, ଗାଁରେ–ସହରରେ, ମନ୍ଦିରରେ–ମସ୍‌ଜିଦରେ, ଗୀର୍ଜାରେ–ଗୁରୁଦ୍ୱାରରେ, ପାଇଖାନାରେ, ମନ୍ଦିରରେ, ଦର୍ଶନ କରିବାକୁ ଚେଷ୍ଟା କରନ୍ତୁ । ଏ ପ୍ରାର୍ଥନା ଆତ୍ମିକ ତଥା ସମଗ୍ର ବିଶ୍ୱ ପାଇଁ । ଜଗତର କଲ୍ୟାଣ ପାଇଁ ଆତ୍ମ ନିବେଦନ, ଆତ୍ମ ସଂଶୋଧନ, ଆତ୍ମ ପରୀକ୍ଷଣ, ସମର୍ପଣ ପଦ୍ଧତି ।

ଆତ୍ମାର ଖାଦ୍ୟ ସତ୍ୟ, ପ୍ରେମ, ସ୍ନେହ, ସାଧୁତା, ଅହିଂସା, ସମତା, ସମ୍ବେଦନଶୀଳତା, ନିର୍ଭୀକତା, ସେବା, ସହଯୋଗ, ସହାନୁଭୂତି, ଆନ୍ତରିକତା, ନିଷ୍କପଟତା, ସ୍ୱାବଲମ୍ବନଶୀଳତା, ସଦାଚାର, ସହଭୋଗ ପ୍ରଭୃତି ଅନନ୍ତ ମାନବିକତା – ସର୍ବୋପରି ଆତ୍ମବୋଧ–ଆତ୍ମ ବିଶ୍ୱାସ, ଆତ୍ମଚେତନା ଦ୍ୱାରା ଲିଖିତ ଅନୁଭୂତ ହୋଇଥାଏ । ସେଥିପାଇଁ ଏହି ଦିବ୍ୟଗୁଣର ପ୍ରକାଶ, ପ୍ରଭାବ ଆଜିର ଯୁଗରେ ଗାଁମାନଙ୍କରେ ତା'ର ମୌଳିକ ସତ୍ତାକୁ ବଜାୟ ରଖିଛି । ତେଣୁ ଗାଁକୁ ସେବକମାନେ ଗଲେ ନିଜକୁ ସେବକ ରୂପେ ଗଢ଼ି ତୋଳିବେ । ଆତ୍ମାର ପୂଜାରେ ସେବକ ନିଜର ଶୁଦ୍ଧି ସହ ଜଗତର କଲ୍ୟାଣକର କାର୍ଯ୍ୟରେ ବ୍ରତୀ ରହିବେ । ନିଜେ ଆଶ୍ଚର୍ଯ୍ୟ ନହୋଇ ଆସୁରୀ ହୋଇ ସେବକର ନମ୍ରତା ରକ୍ଷା ସେବ୍ୟର ପ୍ରିୟ ହେବେ ।

## ବିଶ୍ୱର–ଆଶ୍ୱର–ପ୍ରଶ୍ୱର

ଏଇ ଆଦର୍ଶ, ବିଶ୍ୱର, ମୂଲ୍ୟବୋଧକୁ ଲକ୍ଷ୍ୟ ରଖି ସେ କର୍ମୀମାନଙ୍କୁ ନିଜର ପ୍ରାଣର ଅନୁଭବକୁ ପ୍ରକାଶ କରିଥିଲେ । ବିଶ୍ୱରକୁ ଆଶ୍ୱରରେ ପରିଣତ କଲେ ତାହା ସ୍ୱତଃ ପ୍ରଶ୍ୱରିତ ହୋଇଥାଏ । ବିଶ୍ୱର ଆଶ୍ୱର ଓ ପ୍ରଶ୍ୱରର ସମନ୍ୱୟରେ ବ୍ୟକ୍ତି ହୁଏ ପରିପୂର୍ଣ୍ଣ ନାଗରିକ । "Be good, do good and make others good" ଆଦର୍ଶର ସେ ଥିଲେ ପ୍ରୟୋଗକାରୀ । ଏଇ ଦର୍ଶନ ସେ ଜୀବନରେ ପ୍ରୟୋଗ କରି ଶିଖିଥିଲେ । ସରଳ ଜୀବନ ଓ ଉଚ୍ଚ ଚିନ୍ତନ ଥିଲା ତାଙ୍କ ଆତ୍ମୋପଲବ୍ଧିର ମାର୍ଗ । ସର୍ବଜନ ହିତାୟ – ସର୍ବଜନ ସୁଖାୟ – ସର୍ବୋଦୟ ସମାଜ ସ୍ଥାପନା ତାଙ୍କର ଥିଲା ଲକ୍ଷ୍ୟ ।

## ଉଦ୍ଦେଶ୍ୟ ଓ ଉପାୟ

ଶୁଦ୍ଧ ଉଦ୍ଦେଶ୍ୟ ଓ ଶୁଦ୍ଧ ଉପାୟ ଉପରେ ସେ ଗୁରୁତ୍ୱ ଆରୋପ କରିବାକୁ କର୍ମୀମାନଙ୍କୁ ସୂଚେଇ ଦେଉଥିଲେ । କାରଣ "means justifies the ends" ଯେପରି କର୍ମ ସେପରି ଫଳ ।

କର୍ମ, କର୍ମ, କର୍ମ ତ ଖାଲି ସବୁ ଧର୍ମର ମୂଳ କଥା
ସୁକର୍ମ କଲେ ସୁଫଳ ମିଳେ
କୁକର୍ମେ ମିଳଇ ମହା ବ୍ୟଥା ।

ଏହା ସାର୍ବଜନୀନ ଓ ସାର୍ବକାଳୀନ ସତ୍ୟ । ଏହା କୁସଂସ୍କାର କି ଧର୍ମାନ୍ଧତାର ବିଶ୍ବାସ ନୁହେଁ । "As your food, So your mood" ଯେପରି ଅନ୍ନ, ସେପରି ମନର ବିଶ୍ବାସ ମାନବିକ ମୂଲ୍ୟବୋଧର ଖୁବିକାଠି । ଉଦ୍ଦେଶ୍ୟକୁ ପୂରଣ କରିବା ପାଇଁ ଉପାୟକୁ ଶୁଦ୍ଧ, ମାର୍ଜିତ, ଅନାଶକ୍ତ, ରୁଚିବନ୍ତ, ଶୁଚିବନ୍ତ ଓ ଅମୃତମୟ କରିବାକୁ ସେ ବ୍ୟକ୍ତିଗତ ଚରିତ୍ର ଶୁଦ୍ଧି ପାଇଁ ଗୁରୁତ୍ୱ ଦେଉଥିଲେ । ଏହି ଆତ୍ମାର ଉପଲବ୍ଧି ପାଇଁ ସେ ପ୍ରାର୍ଥନାରେ ଏକାଦଶ ବ୍ରତ ଉପରେ ଗୁରୁତ୍ୱ ଦେଉଥିଲେ । ସ୍ୱରାଜ୍ୟ, ସ୍ୱାଧୀନତା ପାଇଁ ଏପରି କି ସତ୍ୟ ପାଇଁ ସେ ଅହିଂସା ଉପରେ ହିଁ ଗୁରୁତ୍ୱ ଦେଉଥିଲେ ।

## ଏକାଦଶ ବ୍ରତ

ତାଙ୍କର ପ୍ରାର୍ଥନା ଥିଲା ଆତ୍ମାର ଖାଦ୍ୟ । ଶରୀରର ପୁଷ୍ଟି ପରି ଆତ୍ମାର ସନ୍ତୋଷ ପାଇଁ ସେ ପ୍ରାର୍ଥନାକୁ ଦୈନନ୍ଦିନ ଜୀବନର ମୂଳ ମନ୍ତ୍ର ଖାଦ୍ୟ ରୂପେ ଗ୍ରହଣ କରିଥିଲେ । ତାଙ୍କର ଆଶ୍ରମରେ ସନ୍ଧ୍ୟା ଓ ସକାଳ ପ୍ରାର୍ଥନାରେ ଏକାଦଶ ବ୍ରତକୁ ଉଚ୍ଚାରଣ, ମନନ ଓ ସ୍ମରଣ କରାଯାଇ ଆଚରଣରେ ପାଳିବାକୁ ଗୁରୁତ୍ୱ ଦିଆଯାଉଥିଲା । ଏହା ସର୍ବ ଧର୍ମର ସର୍ବ ଗୁଣକୁ ଅନୁଧ୍ୟାନ କରିବାର ଥିଲା ବିନମ୍ର ପ୍ରୟାସ । ଆଜୀବନ ପ୍ରାର୍ଥନା ଥିଲା ତାଙ୍କର ନିୟାମକ, ନିୟନ୍ତ୍ରକ, ସଂରକ୍ଷକ ଓ ସଂଶୋଧକ ତତ୍ତ୍ୱ ।

ଉଚ୍ଚାରଣ ଓ ଆଚରଣ ଉପରେ ସେ ପୂର୍ଣ୍ଣ ଗୁରୁତ୍ୱ ଦେଉଥିଲେ । ଗାନ୍ଧୀରେ ଥାଇ ବି ବିଶ୍ୱର ମାନବିକତାକୁ ଧ୍ୟାନ ରଖି ନୈତିକତା ସହ ଗ୍ରାମ ସେବା କରିବାକୁ ସେ ସୂଚନା ଦେଉଥିଲେ । ବ୍ୟକ୍ତିଗତ ଶୁଦ୍ଧତା ବିଶ୍ୱ ଶୁଦ୍ଧତାର ମୂଳ ସୂତ୍ର ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ବ୍ୟଷ୍ଟି ଓ ବ୍ୟଷ୍ଟି ମଧ୍ୟରେ ବ୍ୟକ୍ତିର ସାଧନା, ଆତ୍ମ ଶୁଦ୍ଧି, ଆତ୍ମ ସମୀକ୍ଷା ପାଇଁ ସେ ପ୍ରାର୍ଥନାକୁ ସାମୂହିକ ଜୀବନରେ ପ୍ରୟୋଗ କରିବାକୁ ସତତ ଚେଷ୍ଟିତ ଥିଲେ । 'ଚରୈବେତି' ମନ୍ତ୍ର ଗାନ କରି ଜୀବନକୁ, ପରିବାରକୁ, ଗ୍ରାମକୁ, ସମାଜକୁ, ଦେଶକୁ, ସର୍ବୋପରି ବିଶ୍ୱକୁ ସରସ ସୁନ୍ଦର କରିବାକୁ ପ୍ରେରଣା ଦେଉଥିଲେ । ସର୍ବେ ଭବନ୍ତୁ ସୁଖିନଃ –ଏହି ମନ୍ତ୍ରକୁ ସମାଜରେ ରୂପାୟିତ କରିବାକୁ ତାଙ୍କର ଚେଷ୍ଟା ଅରଟର ସୂତା ଖିଅରେ, ସ୍ୱଦେଶୀ ବ୍ରତରେ, ଖଦୀ ବସ୍ତ୍ର ପରିଧାନରେ । ହରିଜନ ବସ୍ତି ରହଣୀରେ, ପାଇଖାନା ସଫାଇ, ମୌଳିକ ଶିକ୍ଷାନୁଷ୍ଠାନରେ ବିଶ୍ୱ ସମସ୍ୟା ସମାଧାନରେ ଯୌତୁକ ପ୍ରଥା ବିରୋଧରେ ଅସ୍ପୃଶ୍ୟତା ନିବାରଣରେ, ସ୍ୱାଧୀନତା ସଂଗ୍ରାମରେ, ବିଦେଶୀ ବର୍ଜନରେ - ସର୍ବ କାଳରେ ଲକ୍ଷ୍ୟ ସାଧନ ପାଇଁ ଥିଲା ଅମୋଘ ଅସ୍ତ୍ର । ଈଶ୍ୱର ବିଶ୍ୱାସ, ଆତ୍ମ ସଂଯମ ଓ ସ୍ୱଧର୍ମ ନିଷ୍ଠା ତାଙ୍କର ପ୍ରାର୍ଥନାରୁ ସ୍ଫୁରିତ ହେଉଥିଲା । ତାଙ୍କର ଏକାଦଶ ବ୍ରତର ପ୍ରାସଙ୍ଗିକତା କାଳଜୟୀ ।

## ଏକାଦଶ ବ୍ରତ

ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଅସଂଗ୍ରହ, ଶରୀର ଶ୍ରମ, ଅସ୍ୱାଦ, ସର୍ବତ୍ର ଭୟ ବର୍ଜନ, ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ, ସ୍ପର୍ଶ ଭାବନା ।

ଏଇ ମନ୍ତ୍ରରେ ଆତ୍ମାର ପୂଜା ପାଇଁ ସମସ୍ତ ଉପାୟ ଖୋଲି ଦିଆଯାଇଛି । ଏଥିରୁ ନୈତିକ ମୂଲ୍ୟବୋଧ, ଆଧ୍ୟାତ୍ମିକ ସଂସ୍କାର ପାଇଁ କର୍ମୀକୁ ଅଫୁରନ୍ତ ପ୍ରେରଣା ମିଳେ । ପ୍ରତ୍ୟେକଟିର ବ୍ୟାଖ୍ୟା କଲେ ଆମକୁ ଅନନ୍ତ ଓ ଅଦ୍ଭୁତ ବିଶ୍ୱାସ, ଶକ୍ତି, ସାମର୍ଥ୍ୟ ମିଳିବ । ଏହା ହିନ୍ଦୁ, ମୁସଲମାନ, ଜୈନ, ଶିଖ, ଇଶାଇ, ପାର୍ସି – ସବୁ ଧର୍ମ ଧାରାରୁ ଊର୍ଦ୍ଧ୍ୱରେ ମାନବିକ, ସାତ୍ତ୍ୱିକ ମୂଲ୍ୟବୋଧର ପରିଶୁଦ୍ଧ, ଏହି ନୈତିକ ଅଭିବୃଦ୍ଧିର ଇତି ନାହିଁ । ଏହା ନେତି ନେତି ପ୍ରଗତିକୁ ପ୍ରେରଣା ପ୍ରଦାନ କରେ ।

## ପୃଥିବୀ କେଉଁ ପାଇଁ ବୁଭୁକ୍ଷିତ ?

ଗାନ୍ଧିଜୀ କେବଳ କେତୋଟି ମନ୍ତ୍ର, କେତୋଟି ବ୍ରତରେ ସନ୍ତୁଷ୍ଟ ନଥିଲେ । କେତୋଟି ଧାରା, ଉପଧାରାର ଭେଦ ବୁଦ୍ଧିରେ ସେ ଘୋର ବିରୋଧୀ ଥିଲେ । ସାମଗ୍ରୀକ ମାନବିକତାର ବିକାଶ ପାଇଁ ଅହରହ ସାଧନା କରିବା ଆମର ଧର୍ମ ବୋଲି ସେ ସତ୍ୟାଗ୍ରହୀମାନଙ୍କୁ ନିଜର ବୈପ୍ଳବିକ ଜୀବନଧାରା ମାଧ୍ୟମରେ ପ୍ରଚାର କରିଥିଲେ । ତାଙ୍କ ଭାଷଣରେ – "ପୃଥିବୀ ଶାସ୍ତ୍ର ପାଇଁ ବୁଭୁକ୍ଷିତ ନୁହେଁ । ପୃଥିବୀ ଯେଉଁଥି ପାଇଁ ବ୍ୟାକୁଳ ଭାବରେ ଖୋଜୁଛି ଏବଂ ସର୍ବଦା ଖୋଜିବ, ତାହା ହେଉଛି ନିଷ୍କାପର କର୍ମ" ରାଜନୀତି, ଅର୍ଥନୀତି, ସମାଜନୀତି, କଳା ସଂସ୍କୃତି, ଶିଳ୍ପ, ବାଣିଜ୍ୟ, ଶିକ୍ଷା ଏଇ କର୍ମର ଅନ୍ତର୍ଗତ ।

ଏଇ ନିଷ୍କାପର କର୍ମ ସାଧନା ସତ୍ୟାଗ୍ରହୀଙ୍କର ଆଦର୍ଶ । ଯସ୍ତୁ କ୍ରିୟାବାନ୍ ପୁରୁଷ ସଃ ବିଦ୍ୱାନ୍ । ସା ବିଦ୍ୟା ଯା ବିମୁକ୍ତୟେ – ବିଶ୍ୱର କର୍ମୀମାନଙ୍କର ଧ୍ୟେୟ ହୋଇ ରହିବା ଉଚିତ ବୋଲି ସେ ନିବେଦନ କରୁଥିଲେ । ସଦାଶାସ୍ତ୍ର ଅଧ୍ୟୟନ କରି ଶୁଦ୍ଧ ଜୀବନ ନିର୍ବାହ ପାଇଁ ବ୍ୟକ୍ତିଗତ ଜୀବନର ଶୁଦ୍ଧତା ପାଇଁ ବ୍ରତୀ ଥିଲେ ।

## ସମ୍ପୂର୍ଣ୍ଣ–ଅପୂର୍ଣ୍ଣ–ଭଗବାନ ହିଁ ସର୍ବଜ୍ଞ

ପରମାତ୍ମା କେବଳ ପରିପୂର୍ଣ୍ଣ, ସମ୍ପୂର୍ଣ୍ଣ, ଆମେ ସମସ୍ତେ ଅସମ୍ପୂର୍ଣ୍ଣ । God is only perfect — we are all imperfect ତେଣୁ ଆମର ଦମ୍ଭ, ଗର୍ବ, ଅଭିମାନ, ଭେଦ ବୁଦ୍ଧି ତ୍ୟାଗ କରି ନିରନ୍ତର ପରିପୂର୍ଣ୍ଣତା ପାଇଁ ଜୀବନ ଯଜ୍ଞରେ ଆହୁତି ଦେବା ପାଇଁ ନିଜକୁ ଉତ୍ସର୍ଗ କରି ଚାଲିବା ଉଚିତ । ଗାନ୍ଧିଜୀ ୧୯୪୬ ମସିହା ମାର୍ଚ୍ଚ ୩ ତାରିଖରେ 'ହରିଜନ' ପତ୍ରିକାରେ ଅତି ଚମତ୍କାର ଭାବରେ ଶୁଣାଇଥିଲେ :

କୌଣସି ଲୋକ ଭଗବାନଙ୍କୁ ସମ୍ପୂର୍ଣ୍ଣ ରୂପେ ଜାଣିବା ପାଇଁ ସମର୍ଥ ହୋଇ ନାହିଁ । ଅହିଂସା ପ୍ରତି ମଧ୍ୟ ତାହା ହିଁ ପ୍ରଯୁଜ୍ୟ । ମୁଁ ଆଜି ଯାହା କରୁଛି ତା ସତ୍ୟ ବୋଲି ମନେ କରୁଛି, କାଲି ସେ

ଆମ ରଖିବି ବା ସେହି ବିଶ୍ୱାସ ରଖୁବି, ଏହାର କୌଣସି ନିର୍ଭର ପ୍ରକୃତି ହେଇ ନପାରେ । ଭଗବାନ ହିଁ ସର୍ବଜ୍ଞ । ରକ୍ତ ମାଂସ ଶରୀରଧାରୀ ମାନବ ମୁଖ୍ୟତଃ ଅପୂର୍ଣ୍ଣ । ଈଶ୍ୱର ଅଦୃଶ୍ୟ, ମନୁଷ୍ୟର ବୁଦ୍ଧି ଶକ୍ତିର ଅତୀତ । ତେଣୁ ଆମ୍ଭେମାନେ କେବଳ ଆତ୍ମିକ ଶକ୍ତିସମ୍ପନ୍ନ ବ୍ୟକ୍ତିମାନଙ୍କର ବାଣୀ ଓ କର୍ମକୁ ଅନୁଧ୍ୟାନ କରିବା ଆବଶ୍ୟକ ।

ଗାନ୍ଧିଜୀଙ୍କର ଏଇ ବାଣୀ–ଦର୍ଶନ–ଅନୁଭବ ଥିଲା ସବଳତାର, ଆତ୍ମନିର୍ଭରତାର, ସଂଗ୍ରାମଶୀଳତାର କାଳଜୟୀ ନିର୍ଦ୍ଦେଶ । ଏଥିରେ ତ୍ୟାଗରେ ଭୋଗ, କର୍ମରେ ଯୋଗ, ସ୍ୱଧର୍ମରେ ବିଶ୍ୱପ୍ରେମ । ଜୀବନରେ ଦର୍ଶନ, ସ୍ୱାବଲମ୍ବନରେ ସ୍ୱାଭିମାନ, ବର୍ତ୍ତମାନରେ ଭବିଷ୍ୟତ, ବର୍ତ୍ତମାନରେ ଅତୀତ, ସହଯୋଗରେ ସାମ୍ୟଯୋଗ ଓ ଅସହଯୋଗ, ସ୍ୱଦେଶୀରେ ସର୍ବଦେଶୀ ଭାବ ସେବା ସମର୍ପଣରେ ଆତ୍ମାର୍ପଣ, ମାନବ ସେବାରେ ମାଧବ ସେବା, ଅବିବେକିତାରୁ ବିବେକ ପଥରେ ଯିବା, ଅନ୍ଧକାରରୁ ଆଲୋକାଭିମୁଖୀ ହେବା, ସତ୍ୟାନୁସନ୍ଧାନରେ ସତ୍ୟାନୁସେବନ, ବର୍ଜନରେ ଶୁଭ ଶକ୍ତି ଅର୍ଜନ କରିବା, ଅହିଂସ ହୋଇ ହିଂସ୍ରତାରୁ ପରାକ୍ରମୀ ହେବା – ଏହିପରି ନିରବଚ୍ଛିନ୍ନ ଶୁଦ୍ଧ, ବୁଦ୍ଧ, ମୁକ୍ତ, ସଂଯତ, ନିର୍ଦ୍ଦୋଷ, ଜୀବନ ନିର୍ବାହ କରି ସର୍ବୋତ୍ତମ ନାଗରିକ, ବିନମ୍ର ସେବକ ହୋଇ ପିଣ୍ଡରେ ବ୍ରହ୍ମାଣ୍ଡ ଦର୍ଶନ ତାଙ୍କ ବାଣୀର ସ୍ୱକୀୟତା ।

ଏହି ଆତ୍ମବୋଧ ଭାରତୀୟ ଆତ୍ମାର ଆହ୍ୱାନ ଅଟେ । ସେହି ବାଣୀର ପ୍ରାସଙ୍ଗିକତା କାଳଜୟୀ ହୋଇ ରହିଛି ଆଚରଣକୁ ଅପେକ୍ଷା ରଖି । ବିଶ୍ୱ ପାଇଁ ଭାରତୀୟତା ରକ୍ଷାର ମହତ୍ୱ ଅନିର୍ବଚନୀୟ ।

ତେଣୁ ଶୁଭ, ଶୁଦ୍ଧ, ଶୁଭ – ମନ୍ତ୍ରକୁ ହୃଦୟରେ ଧାରଣ କରି ଅନନ୍ତ ପଥର ଯାତ୍ରୀ ହୋଇ ଭାରତୀୟ ଆତ୍ମାରେ ବିଶ୍ୱାତ୍ମାର ପୂଜନ କରି ଆତ୍ମିକ ତଥା ଜାଗତିକ କଲ୍ୟାଣର ତତ୍ତ୍ୱ ଆମକୁ ସର୍ବ କାଳରେ ଶକ୍ତି, ସାମର୍ଥ୍ୟ ଓ ମହତ୍ତ୍ୱ ପ୍ରଦାନ କରୁ, ଏତିକି କାମନା ଗାନ୍ଧିଜୀଙ୍କ ଭାଷାରେ – ମନୁଷ୍ୟ ଯେ ପର୍ଯ୍ୟନ୍ତ ନିଜକୁ ସ୍ୱେଚ୍ଛାରେ ସମସ୍ତଙ୍କର ତଳେ ନରଖିଇ ପାରିଛି, ସେ ପର୍ଯ୍ୟନ୍ତ ତାହାର ମୁକ୍ତି ନାହିଁ । ଭଗବାନଙ୍କୁ ପ୍ରାର୍ଥନା – ଭଗବାନ ! ମୋତେ କାୟବାକ୍ୟ ମନରେ ଅହିଂସାର ସେବାରେ ବଳ ଦିଅନ୍ତୁ ।

---

ଗ୍ରା/ପୋଃ ନେଯୋର,
ଭାୟା–ଶ୍ରୀବଳଦେବଜୀଉ, କେନ୍ଦ୍ରାପଡ଼ା ।



ଭୁବନେଶ୍ୱର ୟୁନିଟ୍–୪ ମଧ୍ୟ ଇଂରାଜୀ ବିଦ୍ୟାଳୟ ହତା ପରିସର ମଧ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଶିକ୍ଷକ ସଦନର ଭୂମି ପୂଜା କରୁଛନ୍ତି ।

# ଉନ୍ନତ କୃଷି ଯନ୍ତ୍ରପାତି – ଏକ ଗଣ ଆନ୍ଦୋଳନ

ଡଃ ସତ୍ୟାନନ୍ଦ ସ୍ୱାଇଁ

କୃଷି ହେଉଛି ପୃଥିବୀର ସବୁଠାରୁ ପୁରୁଣା ଓ ବୃହତ୍ତମ ଶିଳ୍ପ ସଂସ୍ଥା । ଜୀବନ ଧାରଣର ମୌଳିକ ଆବଶ୍ୟକତା–ଖାଦ୍ୟ, ବସ୍ତ୍ର ଓ ବାସଗୃହ ପାଇଁ ଆବଶ୍ୟକ କଞ୍ଚାମାଲ – ଏହି ଶିଳ୍ପରୁ ହିଁ ମିଳିଥାଏ । ଯାଯାବର ମାନବର ସ୍ଥାୟୀ ବସତି ସ୍ଥାପନ କରିବାର ଅଭିପ୍ସାରୁ କୃଷିର ଅୟମାରମ୍ଭ । ଫଳ ସ୍ୱରୂପ ଚିରସ୍ରୋତା ନଦନଦୀ ଅବବାହିକାରେ ଗଢ଼ି ଉଠିଥିଲା କେତେକ ଉନ୍ନତ ସଭ୍ୟତା । ସେଗୁଡ଼ିକ ମଧ୍ୟରେ ସିନ୍ଧୁ ଅବବାହିକାରେ ହରପ୍ପା ସଂସ୍କୃତି, ମେସୋପଟାମିଆ ସଂସ୍କୃତି, ମିଶର ଓ ଚୀନ ଦେଶର ପ୍ରାଚୀନ ସଂସ୍କୃତି ଇତ୍ୟାଦି ବିଶ୍ୱ ବିଖ୍ୟାତ ।

ବର୍ତ୍ତମାନ ସଭ୍ୟତାର ବିକାଶ ମାତ୍ରାକୁ ଭିତ୍ତିକରି ବିଶ୍ୱର ରାଷ୍ଟ୍ରଗୁଡ଼ିକୁ ୩ଟି ଶ୍ରେଣୀରେ ବିଭକ୍ତ କରାଯାଉଅଛି । ଏଗୁଡ଼ିକ ହେଉଛି ଅତି ଉନ୍ନତ ଓ ବିକଶିତ ରାଷ୍ଟ୍ର, ବିକାଶଶୀଳ ରାଷ୍ଟ୍ର ଓ ଅନୁନ୍ନତ ରାଷ୍ଟ୍ର । ପ୍ରତ୍ୟେକ ରାଷ୍ଟ୍ରର ଅଥବା ମାନବ ସଭ୍ୟତାର ଇତିହାସ ଦେଖିଲେ ବୁଝାଯାଏ ଯେ ସଭ୍ୟତାର ବିକାଶ ବିଭିନ୍ନ ସ୍ତର ଦେଇ ଗତି କରିଥାଏ । ଯେ କୌଣସି ଏକ ଅନୁନ୍ନତ ବିକାଶଶୀଳ ରାଷ୍ଟ୍ରର ପ୍ରାୟ ଶତକଡ଼ା ୭୦–୮୦ ଭାଗ ଲୋକ କୃଷି କାର୍ଯ୍ୟରେ ନିୟୋଜିତ ହୋଇ ଜୀବିକା ନିର୍ବାହ କରନ୍ତି । ୧୮୨୦ ମସିହାର ଆମେରିକା, ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ଧ୍ୱଂସପ୍ରାପ୍ତ ୧୯୫୦ ମସିହାର ଜାପାନ, ୧୯୭୦–୮୦ ମସିହାର ଚୀନ ଦେଶ ଓ ବର୍ତ୍ତମାନର ଓଡ଼ିଶା ରାଜ୍ୟର ପରିସ୍ଥିତି (କୃଷି, ଶିଳ୍ପ, ବ୍ୟବସାୟ ଓ ଜୀବନ ଧାରଣର ମାନ)ରେ ବିଶେଷ କିଛି ତଫାତ୍ ପରିଲକ୍ଷିତ ହୁଏ ନାହିଁ । ଆମେରିକା, ଜାପାନ, ଫ୍ରାନ୍ସ୍ ଓ କାନାଡ଼ା ଭଳି ଅତି ଉନ୍ନତ ଓ ଶକ୍ତିଶାଳୀ ଦେଶମାନଙ୍କରେ ଅନ୍ୟାନ୍ୟ ଶିଳ୍ପକ୍ଷେତ୍ର ପରି କୃଷି କାର୍ଯ୍ୟରେ ମଧ୍ୟ ଅତ୍ୟାଧୁନିକ ଯନ୍ତ୍ରପାତି ବ୍ୟବହୃତ ହୋଇଥାଏ । କୃଷି ଓ ଶିଳ୍ପ ପରସ୍ପର ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଉଭୟ କ୍ଷେତ୍ରରେ ଅଗ୍ରଗତିର ସମନ୍ୱୟତାର ଅଭାବ ହେଲେ ଦେଶର ସାମୂହିକ ବିକାଶ ସମ୍ଭବ ନୁହେଁ ।

ଆମ ରାଜ୍ୟରେ ଚାଷୀମାନଙ୍କର ଜମିର ପରିମାଣ କମ୍ ଓ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ସହରାଞ୍ଚଳରେ ଦ୍ରୁତ ଅଗ୍ରଗତି ଯୋଗୁଁ ଅଧିକ ମଜୁରି ମିଳୁଥିବାରୁ, ଗ୍ରାମାଞ୍ଚଳରେ କାମ କରିବା ଲୋକଙ୍କ ଅଭାବ ବିଶେଷ ଭାବରେ ପରିଲକ୍ଷିତ ହେଉଛି । ଏହି ପରିସ୍ଥିତିରେ ଚାଷ କାମଗୁଡ଼ିକୁ ସମୟାନୁଯାୟୀ କରିବା ପାଇଁ ଚାଷୀମାନଙ୍କ ପକ୍ଷରେ ବିଭିନ୍ନ କୃଷି ଯନ୍ତ୍ରପାତି ଓ ପାୱାର ଟିଲର ବ୍ୟବହାର କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ଚାଷୀମାନଙ୍କର ଉନ୍ନତ କୃଷି ଯନ୍ତ୍ରପାତି ସୁବିଧା [illegible] ରାଜ୍ୟ ଯୋଜନା ପରିଷଦ ଆନୁକୂଲ୍ୟରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ରାଜ୍ୟ କୃଷି ବିଭାଗ, କୃଷି ଶିଳ୍ପ ନିଗମ, ଆଞ୍ଚଳିକ ଗବେଷଣାଗାର, କେନ୍ଦ୍ରୀୟ ଧାନ ଗବେଷଣା ସଂସ୍ଥା ଓ ଓଡ଼ିଶା ଉତ୍ପାଦକତା କାଉନ୍‌ସିଲ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ପାଇଁ ଏକ ଯୋଜନା ପ୍ରସ୍ତୁତ କରାଯାଇଅଛି । ଏହା ଫଳରେ କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ଗବେଷଣା ସଂସ୍ଥାରେ ଉଦ୍ଭାବିତ ଉନ୍ନତ କୃଷି ଯନ୍ତ୍ରପାତିଗୁଡ଼ିକୁ ସରକାରୀ କୃଷି ଯନ୍ତ୍ରପାତି କାରଖାନା (Implement Factory)ରେ ବିକଶିତ କରି ପ୍ରୋଟୋଟାଇପ (Prototype) ତିଆରି କରାଯାଉଛି । ଏହି ପ୍ରୋଟୋଟାଇପଗୁଡ଼ିକୁ କୃଷି ବିଶ୍ୱ ବିଦ୍ୟାଳୟ ଓ ସରକାରୀ ଫାର୍ମ ଏବଂ ଚାଷୀମାନଙ୍କ ଜମିରେ ପରୀକ୍ଷା କରିବା ପରେ ରାଜ୍ୟସ୍ତରୀୟ ବୈଷୟିକ କମିଟିର ଅନୁମୋଦନ ପାଇଁ ଦିଆଯାଉଛି । ଅନୁମୋଦନ ଲାଭ କରୁଥିବା ଉପକରଣଗୁଡ଼ିକ ସରକାରୀ କୃଷି ଯନ୍ତ୍ରପାତି କାରଖାନା ଓ କ୍ଷୁଦ୍ର ଶିଳ୍ପ ସଂସ୍ଥା (SSI Unit)ମାନଙ୍କ ଦ୍ୱାରା ତିଆରି ହୋଇ ଜିଲ୍ଲା କୃଷି ଯନ୍ତ୍ରୀମାନଙ୍କ ମାଧ୍ୟମରେ ରିହାତି ଦରରେ ଚାଷୀମାନଙ୍କୁ ଯୋଗାଣ ଦିଆଯାଉଛି ।

ଉନ୍ନତ କୃଷି ଯନ୍ତ୍ରପାତି ଉପରେ ଗବେଷଣା, ଏହାର ଉତ୍ପାଦନ ଓ ବିତରଣ ବ୍ୟବସ୍ଥାକୁ ସଙ୍ଗଠିତ କରିବା ପାଇଁ ବିଗତ ତିନି ବର୍ଷରେ ଅନେକଗୁଡ଼ିଏ କାର୍ଯ୍ୟ କରାଯାଇଅଛି । [illegible] ରାଜ୍ୟସ୍ତରୀୟ କର୍ମଶାଳା ଓ ଆଲୋଚନାଚକ୍ର, ରାଜ୍ୟ ବିଧାନ ସଭା ପରିସର ମଧ୍ୟରେ ଉନ୍ନତ କୃଷି ଯନ୍ତ୍ରପାତି ପ୍ରଦର୍ଶନୀ ଓ [illegible] ସ୍ତରରେ ଆୟୋଜିତ ଚାଷୀମାନଙ୍କ ଜମିରେ କୃଷି ଯନ୍ତ୍ରପାତି [illegible] ପରିଚାଳନା ଓ ପ୍ରଦର୍ଶନୀ ବିଶେଷ ଉଲ୍ଲେଖନୀୟ । ବିଧାନ [illegible] ପରିସର ଓ ପଞ୍ଚାୟତ ସ୍ତରରେ ଆୟୋଜିତ ଏହି [illegible] ପ୍ରଦର୍ଶନୀରେ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ [illegible] ପଟ୍ଟନାୟକ ଉନ୍ନତ କୃଷି ଯନ୍ତ୍ରପାତି ବ୍ୟବହାର ଉପରେ [illegible] ଉଦ୍‌ବୋଧନ ଦେଇଥିଲେ । ଚାଷୀମାନଙ୍କ ଜମିରେ [illegible] ପ୍ରଦର୍ଶନୀ ଓ ପରିଚାଳନାର ବିଶେଷତ୍ୱ ହେଲା :

(୧) ପ୍ରଥମ ଥର ପାଇଁ ଚାଷୀମାନେ ନିଜ ଗାଁରେ ଓ [illegible] ଉପରେ ଉନ୍ନତ ଲଙ୍ଗଳ, ଦା' ଓ ଅନ୍ୟାନ୍ୟ [illegible] ଦେଖିବାକୁ ପାଇଲେ ।

(୨) ଯନ୍ତ୍ରପାତିଗୁଡ଼ିକୁ ନିଜେ ଚଳାଇ ତା'ର ଉପକାରିତା ବୁଝି ପାରିଲେ ।

(୩) ନିଜ ଗାଁରେ ଉନ୍ନତ କୃଷି ଯନ୍ତ୍ରପାତି କିଣିବାର ସୁବିଧା ପାଇଲେ ।

(୪) ଏହି କାର୍ଯ୍ୟକ୍ରମରେ ଗାଁର କାରିଗର (କମାର, ବଢ଼େଇ ଓ ମୋଚି)ମାନେ ଭାଗ ନେଇଥିଲେ ।

(୫) କମାରମାନେ ଶାଳ ବସାଇ ଚାଷୀମାନଙ୍କ ଆଗରେ ଉନ୍ନତ ଲଙ୍ଗଳ, ଘାସ ବାଛିବା ଯନ୍ତ୍ର ଓ ଟ୍ରେଞ୍ଚ୍ ହୋ ଇତ୍ୟାଦି ତିଆରି କଲେ ।

(୬) ଚାଷୀମାନଙ୍କର ହୃଦ୍‌ବୋଧ ହେଲା ଯେ ଗାଁର କାରିଗରମାନେ ନିଜ ଗାଁ ଓ ଆଖପାଖ ଗାଁର ସୁବିଧା ପୂରଣ ପାଇଁ କେତେକ ଉନ୍ନତ କୃଷି ଯନ୍ତ୍ରପାତି ତିଆରି କରିପାରିବେ ଏବଂ ସେଗୁଡ଼ିକର ମରାମତି ମଧ୍ୟ କରି ପାରିବେ ।

(୭) କୃଷି ଯନ୍ତ୍ରପାତିର ମରାମତି ପାଇଁ ଚାଷୀମାନଙ୍କୁ ବାରମ୍ବାର ହଇରାଣ ହରକତ ହୋଇ ସହର ବଜାରକୁ ଯିବାକୁ ପଡ଼ିବ ନାହିଁ ।

(୮) ଗାଁର ଯୁବକ ସଙ୍ଘ ଏହି ଯନ୍ତ୍ରପାତିଗୁଡ଼ିକ ରଖି ଭଡ଼ା ସୂତ୍ରରେ ଚାଷୀମାନଙ୍କୁ ଯୋଗାଇ ଦେଇ ପାରିବେ ।

(୯) ଇଞ୍ଜିନିୟର ଓ ଚାଷୀମାନଙ୍କ ମଧ୍ୟରେ ଆଲୋଚନା ହେବାରୁ ସ୍ଥାନୀୟ ଆବଶ୍ୟକତା ଅନୁଯାୟୀ ଯନ୍ତ୍ରପାତି ଉଦ୍ଭାବନ ପାଇଁ ଇଞ୍ଜିନିୟରମାନେ ଅନେକ ତଥ୍ୟ ସଂଗ୍ରହ କରିପାରିଲେ ।

ଉନ୍ନତ କୃଷି ଯନ୍ତ୍ରପାତି କାର୍ଯ୍ୟକ୍ରମରେ ରାଜ୍ୟର ପ୍ରାୟ ୩୫ ଲକ୍ଷ ଚାଷୀ ପରିବାର ଉପକୃତ ହେବେ । ଯନ୍ତ୍ରପାତି ତିଆରି ଓ ମରାମତି ଯୋଗୁଁ ଗାଁ କାରିଗରମାନେ କାମଧନ୍ଦା ପାଇବେ । ଯୁବକମାନେ କୃଷି ଯନ୍ତ୍ରପାତି ରଖି ଚାଷୀମାନଙ୍କୁ ଭଡ଼ା ସୂତ୍ରରେ ଯୋଗାଇଦେବେ । ଫଳରେ ଚାଷୀମାନେ ଯନ୍ତ୍ରପାତି ବ୍ୟବହାର କରିବାର ସୁଯୋଗ ପାଇବେ । ଯୁବକ ସଙ୍ଘ ନିଜର ଆୟ ବଢ଼ାଇ ଉନ୍ନୟନମୂଳକ କାର୍ଯ୍ୟକ୍ରମ ହାତକୁ ନେବେ । ଚାଷୀମାନଙ୍କର ଆବଶ୍ୟକତା ଅନୁଯାୟୀ ଯନ୍ତ୍ରପାତି ବିକଶିତ ହେବ ।

ଆମ ରାଜ୍ୟ ପାଇଁ ବର୍ଷକୁ ପ୍ରାୟ ୬୫ କୋଟି ଟଙ୍କାର ଉନ୍ନତ କୃଷି ଯନ୍ତ୍ରପାତି ଆବଶ୍ୟକ ହେଉଥିବା ବେଳେ, ବର୍ତ୍ତମାନ ବର୍ଷକୁ ୯ କୋଟି ୨୦ ଲକ୍ଷ ଟଙ୍କାର ଯନ୍ତ୍ରପାତି ଯୋଗାଇ ଦିଆଯାଉଥିଲା । ଚଳିତ ବର୍ଷ ପ୍ରାୟ ୮ କୋଟି ଟଙ୍କାର କୃଷି ଯନ୍ତ୍ରପାତି (ମୋଲ୍ଡବୋର୍ଡ ଲଙ୍ଗଳ, ଲୋ' ଲିଫଟ୍ ପମ୍ପ ଓ ଅନ୍ୟାନ୍ୟ) ଯୋଗାଇ ଦେବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲି । ଆବଶ୍ୟକୀୟ ସୁବିଧା ପୂରଣ ପାଇଁ ବର୍ଷକୁ ପ୍ରାୟ ୭୦ ହଜାର ମେଟ୍ରିକ୍ ଟନ୍ କଞ୍ଚାମାଲ (ଲୁହା ଇସ୍ପାତ) ଦରକାର ଓ ୬୦୦ କ୍ଷୁଦ୍ର ଶିଳ୍ପ ସଂସ୍ଥା (SSI Unit)କୁ କୃଷି ଯନ୍ତ୍ରପାତି ତିଆରି କରିବାକୁ ହେବ । ଏହା ଦ୍ୱାରା ୬,୦୦୦ କୁଶଳୀ ଓ ଅର୍ଦ୍ଧକୁଶଳୀ କାରିଗର ଓ ୬୦୦ କୃଷି ଇଞ୍ଜିନିୟର କର୍ମ ସଂସ୍ଥାନ ପାଇବେ । ଏହି ଗଣ ଆନ୍ଦୋଳନର ସଫଳ ରୂପାୟନ ଦ୍ୱାରା ଆମ ରାଜ୍ୟରେ କୃଷି ବିକାଶ ଓ ଉତ୍ପାଦନ ବୃଦ୍ଧି ସହିତ ଅନ୍ୟାନ୍ୟ ଶିଳ୍ପର ଅଭିବୃଦ୍ଧି ଅବଶ୍ୟମ୍ଭାବୀ ।

---

**ମୁଖ୍ୟ ଗବେଷଣା ଯନ୍ତ୍ରୀ,**
**ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ,**
**ଭୁବନେଶ୍ୱର ।**




ଜଗତସିଂହପୁର ଜିଲ୍ଲା ବାଇଶିମୌଜାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଝାନସୀ ରାଣୀ ମହିଳା ମଙ୍ଗଳ ସମିତିକୁ ଉଦ୍‌ଘାଟନ କରୁଛନ୍ତି ।

# ପଶ୍ଚିମ ଓଡ଼ିଶାର ପ୍ରଧାନ ପର୍ବ "ନୂଆ ଖାଇ"

ରାମ ପ୍ରସାଦ ପୁରୋହିତ

ଅନ୍ନ ପୂଜା ବା ଶସ୍ୟ ପୂଜା ଭାରତୀୟ ଜନ ଜୀବନରେ ବହୁ କାଳରୁ ପ୍ରଭାବ ବିସ୍ତାର କରି ଆସିଛି । ଅନ୍ନ ଯୋଗୁଁ ପ୍ରତ୍ୟେକ ପ୍ରାଣୀ ସୃଷ୍ଟିକର୍ତ୍ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜଣାଇଥାନ୍ତି । ଏଣୁ ବୋଧହୁଏ ସୃଷ୍ଟିକର୍ତ୍ତାଙ୍କ ପ୍ରତି ନିଜ ମନର ଗଭୀର କୃତଜ୍ଞତା ଜଣାଇବା ଉଦ୍ଦେଶ୍ୟରେ ଏଭଳି ଏକ ପର୍ବର କଳ୍ପନା ମଣିଷ କରିଛି । ଭାରତର ପ୍ରାୟ ସବୁ ଅଞ୍ଚଳରେ ଶସ୍ୟ ପୂଜା ପର୍ବପର୍ବାଣୀ ମାଧ୍ୟମରେ ପାଳିତ ହେବାର ଦେଖାଯାଏ । କିନ୍ତୁ ପଶ୍ଚିମ ଓଡ଼ିଶାର ଏହି 'ନବାନ୍ନ' ପାଳନର ଏକ ବିଶେଷତ୍ୱ ରହିଛି ।

ଅନ୍ନକୁ 'ବ୍ରହ୍ମ' ବୋଲି ମଧ୍ୟ କୁହାଯାଏ । ଅନ୍ନ ଆମର ଜୀବନ ଧାରଣ ପାଇଁ ଏକାନ୍ତ ଆବଶ୍ୟକ । ଏଣୁ ଅନ୍ନ ଆମର ଆତ୍ମା ସହିତ ଜଡ଼ିତ । ଅନ୍ନର ସୃଷ୍ଟିକର୍ତ୍ତାଙ୍କୁ ପବିତ୍ର ମନରେ ଚିନ୍ତନ କରିବା ପାଇଁ ଏଭଳି ପର୍ବର ଆରମ୍ଭ, ଏଥିରେ ସନ୍ଦେହ ନାହିଁ । ଅନ୍ୟ ପର୍ବପର୍ବାଣୀ ପରି ଏହି ପର୍ବର ମଧ୍ୟ ପୂଜାବିଧି ରହିଛି । 'ନୂଆଖାଇର' ମହତ୍ତ୍ୱ ସାମାଜିକ ସ୍ତରରେ ଉପଲବ୍ଧି କରି ହୁଏ । ଏହି ପର୍ବ ଭାରତ ତଥା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ବିଭିନ୍ନ ସମୟରେ ପାଳିତ ହେବାର ଦେଖାଯାଏ । କିନ୍ତୁ ପଶ୍ଚିମ ଓଡ଼ିଶାରେ ଏହା ଏତେ ବ୍ୟାପକ ଓ ସାମୂହିକ ଭାବରେ ପାଳିତ ହେବାର ଦେଖାଯାଏ ନାହିଁ । କେତେକ ଅଞ୍ଚଳରେ ବିଜୟା ଦଶମୀ, ଦୀପାବଳୀ କିମ୍ବା ଏକ ଶୁଭଦିନ ଦେଖି ନବାନ୍ନ ଭକ୍ଷଣ କରିବାର ବିଧି ରହିଛି । କିନ୍ତୁ ପଶ୍ଚିମ ଓଡ଼ିଶାରେ ନୂଆ ଖାଇ ଭାଦ୍ର ମାସରେ ହିଁ ପାଳିତ ହୋଇଥାଏ ।

ଭାଦ୍ର ମାସରେ ଧାନଗଛ ଫଳ ଧରିବା ଆରମ୍ଭ କରିଥାଏ । ଏଣୁ ଏହି ନୂତନ ଶସ୍ୟକୁ ପ୍ରଥମେ ଅଭିନନ୍ଦନ ଜଣାଇ ସୃଷ୍ଟିକର୍ତ୍ତା ତଥା ନିଜ ଦେବଦେବୀଙ୍କ ଚରଣ ତଳେ ଅର୍ପଣ କରି, ପ୍ରସାଦ ସେବନ ପୂର୍ବକ ଭବିଷ୍ୟତର ଶୁଭଚିନ୍ତନ କରିବା ବୋଧହୁଏ ଏହି ପର୍ବ ପାଳନର ଉଦ୍ଦେଶ୍ୟ । ପୁନଶ୍ଚ ଶ୍ରମର ଏହି ପ୍ରଥମ ଫଳକୁ ପଶୁ ପକ୍ଷୀ ଦ୍ୱାରା ଅଇଁଠା ହେବା ପୂର୍ବରୁ ଦେବଦେବୀଙ୍କୁ ଅର୍ପଣ କରିବା ଉଚିତ । ଏହି ଭାବନା ମଧ୍ୟ ଏହି ପର୍ବର ଅନ୍ୟ ଏକ ଉଦ୍ଦେଶ୍ୟ ।

ଏହି ପର୍ବ ପାଳନ ପାଇଁ ଏକ ବ୍ରାହ୍ମ ମୁହୂର୍ତ୍ତ ସ୍ଥିର କରାଯାଏ । କେତେକ ସ୍ଥାନରେ ନିଜ ଇଷ୍ଟଦେବ ବା ଦେବୀଙ୍କ ନାମରେ, ପୁଣି ଆଉ କେଉଁ ସ୍ଥାନରେ ରାଜା ବା ଜମିଦାରଙ୍କ ନାମାନୁସାରେ ସିଦ୍ଧ ମୁହୂର୍ତ୍ତ ବା ନବାନ୍ନ ଭକ୍ଷଣ କରିବାର ଲଗ୍ନ ଧରାଯାଏ, ସମ୍ବଲପୁର ଅଞ୍ଚଳରେ ସମଲେଶ୍ୱରୀ, ବଲାଙ୍ଗୀର ଅଞ୍ଚଳରେ ପାଟଣେଶ୍ୱରୀ ଓ ସମଲେଶ୍ୱରୀ, କଳାହାଣ୍ଡି ଅଞ୍ଚଳରେ ମାଣିକେଶ୍ୱରୀ, ସୋନପୁର ଅଞ୍ଚଳରେ ସୁରେଶ୍ୱରୀ ପ୍ରଭୃତି ଦେବୀଙ୍କ ନାଁରେ ଏହି ବ୍ରାହ୍ମ ମୁହୂର୍ତ୍ତ ସ୍ଥିର କରାଯାଉଥିଲା । କିନ୍ତୁ ଏବେ ଭାଦ୍ରବ ପଞ୍ଚମୀରେ ପଶ୍ଚିମ ଓଡ଼ିଶାର ସବୁ ଅଞ୍ଚଳରେ 'ନବାନ୍ନ ଭକ୍ଷଣ'ର ବ୍ରାହ୍ମ ମୁହୂର୍ତ୍ତ ସ୍ଥିର କରାଯାଉଅଛି ।

ପଶ୍ଚିମ ଓଡ଼ିଶାରେ ଏହି ପର୍ବ ପାଳନର ବିଧି ମଧ୍ୟ ଅନ୍ୟ ଅଞ୍ଚଳଠାରୁ ସ୍ୱତନ୍ତ୍ର । ପରିବାରର ଯିଏ ଯେଉଁଠି ଥାଉନା କାହିଁକି ନୂଆ ଖାଇ ଦିନ ଘରକୁ ଆସିବାର ପ୍ରଥା ପ୍ରଚଳିତ ଅଛି । ନୂଆ ଖାଇ ପୂର୍ବରୁ ଘରକୁ ଲିପାପୋଛା କରି ପରିଷ୍କାର କରାଯାଏ । ଏହି ଦିନ ବଡ଼ି ଭୋରରୁ ଘରର ବୋହୂମାନେ ଗାଧୋଇ ସ୍ନାନ ଓ ପିଠାପଣା ତିଆରି କରିବା ... ରଖନ୍ତି । ଏହି ଦିନ ନୂଆ ଲୁଗା ପରିଧାନ କରିବାର ବିଧି ରହିଛି । ନୂଆ ଖାଇ ଦିନ ପ୍ରତି ଘରେ ପିଠାପଣା, ... ତଥା ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ତିଆରି କରାଯାଏ । ଏ ସବୁ ସାମଗ୍ରୀକୁ ପ୍ରଥମେ ନିଜ ଇଷ୍ଟଦେବ ବା ଦେବୀଙ୍କୁ ... ମହାଲକ୍ଷ୍ମୀଙ୍କୁ ଅର୍ପଣ କରାଯାଏ । ତାପରେ ଘରର ଇଷ୍ଟଦେବ ବା ଦେବୀଙ୍କୁ ପୂଜା ଫୁଲ ଓ ଚୁଡ଼ଳ ଅର୍ପଣ କରି ଏକାଠି ... ବସନ୍ତି । ପ୍ରଥମେ ନୂଆ ଧାନର ଚୁଡ଼ଳ ଖୁଆଯାଏ । ... ଭାବରେ ପରିବାରର ସମସ୍ତେ ଏକାଠି ବସି ପ୍ରସାଦ ସେବନ ... କରନ୍ତି । କିନ୍ତୁ ଏହି ପ୍ରସାଦ ସେବନ ଘରର ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ଦ୍ୱାରା ହୋଇଥାଏ । ତାଙ୍କ ପରେ ଅନ୍ୟମାନେ ପ୍ରସାଦ ସେବନ କରନ୍ତି । ଏହି ପର୍ବର ମହତ୍ତ୍ୱ ସେତେବେଳେ ଉପଲବ୍ଧି କରି ହୁଏ ଯେତେବେଳେ କି ଭାଇ ଭାଇ ମଧ୍ୟରେ ମନୋମାଳିନ୍ୟ ଥିଲେ ବି ସାନଭାଇ ବଡ଼ଭାଇ ଘରକୁ ଯାଇ ଏକା ସଙ୍ଗରେ ପ୍ରସାଦ ସେବନ କରେ । ପ୍ରସାଦ ସେବନ ପରେ ସମସ୍ତେ ପୁଣି ଇଷ୍ଟଦେବ ବା ଦେବୀଙ୍କୁ ମୁଣ୍ଡିଆ ମାରନ୍ତି । ତା'ପରେ ଛୋଟମାନେ ବଡ଼ମାନଙ୍କୁ ମୁଣ୍ଡିଆ ମାରିବା ବିଧି ରହିଛି । ଏ ବିଧି ଯେ ପାରମ୍ପରିକ ଭାବରେ ଚାଲି ଆସୁଛି ତା' ନୁହେଁ, ବାସ୍ତବରେ ଏହା ମଣିଷ ମନର ... ଚିନ୍ତନ, ଆମ ସଂସ୍କୃତିର ଏକ ଜୀବନ୍ତ ପ୍ରତିଛବି ।

ଏହି ପର୍ବ ପାରିବାରିକ ପ୍ରତିପ୍ରେକ୍ଷୀରେ ସ୍ନେହ, ପ୍ରୀତି ... କରିବାରେ ଲୁପ୍ତ ସୌହାର୍ଦ୍ଦ୍ୟ ଫେରାଇ ଆଣିବାରେ ... ହୋଇଥାଏ । ସାମାଜିକ କ୍ଷେତ୍ରରେ ମଧ୍ୟ ...

ଉପଯୋଗିତା ରହିଛି । କେବଳ ପରିବାରର ବୟୋଜ୍ୟେଷ୍ଠମାନଙ୍କୁ ସମ୍ମାନ ପ୍ରଦର୍ଶନରେ ଏହା ସୀମାବଦ୍ଧ ନୁହେଁ । 'ନୂଆ ଖାଇ ଜୁହାର' ଏହି ପର୍ବର ଏକ ବିଶେଷ ବିଧି । ଏହି ଦିନ ବନ୍ଧୁବାନ୍ଧବ ପରସ୍ପରକୁ ଭେଟି ନୂଆ ଖାଇ ଜୁହାର ଜଣାନ୍ତି । ପୁଣି କନିଷ୍ଠମାନେ ଜ୍ୟେଷ୍ଠମାନଙ୍କୁ ଭେଟି 'ନୂଆ ଖାଇ ଜୁହାର' ଜଣାଇବା ଏହି ପର୍ବର ଏକ ବିଶିଷ୍ଟ ପରମ୍ପରା ।

ନୂଆ ଖାଇର ପ୍ରସାଦ ସେବନ ପରେ ଏକାକୀ ହେଉ ବା ଦଳ ଦଳ ହୋଇ ଲୋକେ ଦେବ ଦର୍ଶନକୁ ଯାଆନ୍ତି । କୀର୍ତ୍ତନ ସହ ମଧ୍ୟ ମନ୍ଦିରକୁ ଯାଇ ଦେବ ଦର୍ଶନ କରାଯାଏ । ଏହି ଦିନ ଦ୍ୱିପ୍ରହର ବେଳା ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାରର ଖେଳ କସରତ୍‌ର ଆୟୋଜନ ହୋଇଥାଏ । ବିଶେଷତଃ ଡୁଡୁ ଖେଳ କି ସହର କି ଗ୍ରାମ, ସବୁଠି ଖେଳିବାର ଦେଖାଯାଏ । ଗାଁମାନଙ୍କରେ ମେଣ୍ଢା ଲଢ଼େଇ ଏହି ଦିନର ଏକ ବିଶେଷ ଆକର୍ଷଣ । ଏଥିପାଇଁ ଗାଁମାନଙ୍କରେ ହୃଷ୍ଟପୁଷ୍ଟ ମେଣ୍ଢାମାନଙ୍କୁ ଅନେକ ଆଗରୁ ତାଲିମ ଦିଆଯାଇଥାଏ । ଗୋଟିଏ ଗାଁର ଲୋକ ନିଜର ଲଢୁଆ ମେଣ୍ଢାମାନଙ୍କୁ ନେଇ ଆଉ ଗୋଟିଏ ଗାଁକୁ ଯାଇଥାନ୍ତି ଓ ମେଣ୍ଢା ଲଢ଼େଇ କରିଥାନ୍ତି । ଯେଉଁ ଗାଁର ମେଣ୍ଢା ଏହି ଲଢ଼େଇରେ ଜିଣେ ସେମାନେ ହାରିଥିବା ମେଣ୍ଢାକୁ ନେଇଯାଆନ୍ତି । ଏଥିପାଇଁ ଶହ ଶହ ଟଙ୍କା ମଧ୍ୟ ବାଜି ରଖାଯାଏ । ନୂଆଖାଇ ଦିନ ସନ୍ଧ୍ୟାରେ ଶ୍ରମିକ, କୃଷକ ତଥା ଆଦିବାସୀ ଶ୍ରେଣୀର ଲୋକେ ମଦ ଓ ମାଂସ ଖାଇ ରାତିଟା ମଉଜ ମଜଲିସ୍‌ରେ କଟେଇଥାନ୍ତି । ନୂଆ ଖାଇର ଅନ୍ୟ ଦିନ ଅର୍ଥାତ୍ ବାସି ଦିନ ସାଧାରଣ ଲୋକେ ବାସି ପିଠା, ମଣ୍ଡା ତଥା ମାଂସ ଖାଇ ଉପଭୋଗ କରନ୍ତି ।

'ନୂଆ ଖାଇ' ପାଳନ ଏ ଅଞ୍ଚଳର ସାଂସ୍କୃତିକ ଚେତନାର ଅଭିବୃଦ୍ଧିରେ ସହାୟକ । ଏହି ଦିବସ ଆମକୁ ଭଦ୍ରବାଣୀ ଉଚ୍ଚାରଣ କରିବାକୁ ଓ ଅନ୍ୟକୁ ଦ୍ୱେଷ ନ କରିବାକୁ ଶିକ୍ଷା ଦିଏ । ଏହି ଦିନରେ ଲୋକେ ପରସ୍ପରକୁ ଜୁହାର କରି 'ଜିଇଁ ଜାଗିଥିଲେ ବରଷେ' ବୋଲି କହିଥାନ୍ତି । ଅର୍ଥାତ୍ ଜୀବନ ଥିଲେ ଅନ୍ୟ ବର୍ଷ ପୁଣି ଭେଟ ହେବ । ଏଣୁ ନୂଆ ଖାଇ ପର୍ବ କେବଳ ଏକ ପରମ୍ପରା ନୁହେଁ ଏହା ପଶ୍ଚିମ ଓଡ଼ିଶାର ସଂସ୍କୃତି ଓ ଜୀବନ ଦର୍ଶନର ଆଲେଖ୍ୟ ।

---

କଣ୍ଟାବାଞ୍ଜି,
ବଲାଙ୍ଗୀର-୭୬୭୦୩୯ ।



ଭୁବନେଶ୍ୱର ଲୋକ ସମ୍ପର୍କ ଭବନଠାରେ ଆୟୋଜିତ ଏକ ସାମ୍ବାଦିକ ସମ୍ମିଳନୀରେ କେନ୍ଦ୍ର ଶ୍ରମ ମନ୍ତ୍ରୀ ଶ୍ରୀ ପି: ଏ: ସାଙ୍ଗମା ଉଦ୍‌ବୋଧନ ଦେଉଛନ୍ତି । ରାଜ୍ୟ ଶ୍ରମ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ଉପସ୍ଥିତ ଅଛନ୍ତି ।

# ଗାନ୍ଧିଜୀଙ୍କର ଧର୍ମ ଚେତନା

ବିଜୟ କୁମାର ଦାଶ

ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କର ଶୈଶବ ନାମ ଥିଲା ମହନିଆ । ସେ ଏପରି ଏକ ସଂସ୍କୃତିସମ୍ପନ୍ନ ପରିବାରରେ ଜନ୍ମଗ୍ରହଣ କରିଥିଲେ ଯେଉଁଠି ସବୁବେଳେ ଏକ ଧାର୍ମିକ, ଆଧ୍ୟାତ୍ମିକ ବାୟୁମଣ୍ଡଳ ଥିଲା । ଘରେ ଗୁଡ଼ିଏ ଧର୍ମଶାସ୍ତ୍ର ଓ ପୁରାଣ ବହି ଥିଲା । ପୋର୍ ବନ୍ଦରରେ ଥିବା ବେଳେ ସକାଳ ଗାଧୁଆ ପରେ ଗାନ୍ଧିଜୀ ଓ ତାଙ୍କ ଦାଦିଙ୍କ ପୁଅ ସବୁଦିନେ ରାମରକ୍ଷା ପାଠ କରୁଥିଲେ । ତାଙ୍କ ଅସୁସ୍ଥ ବାପା କାବା ଗାନ୍ଧୀଙ୍କର କେତେକ ସମୟ ପୋର୍ ବନ୍ଦରରେ କଟିଥିଲା । ସେଠାରେ ସେ ପ୍ରତିଦିନ ରାତିରେ ରାମଜୀ ମନ୍ଦିରରେ ରାମାୟଣ ଶୁଣୁଥିଲେ । ରାମାୟଣ ପଢୁଥିଲେ ବୀଲେଶ୍ୱରର ଲାଧା ମହାରାଜ ବୋଲି ରାମଚନ୍ଦ୍ରଙ୍କର ଜଣେ ପରମ ଭକ୍ତ । ସେ ଏପରି ଭାବରେ ପଢୁଥିଲେ ଯେ ତାହା ଶ୍ରୋତାମାନଙ୍କୁ ତନ୍ମୟ କରି ଦେଉଥିଲା । ରାମାୟଣ ପ୍ରତି ଗାନ୍ଧିଜୀଙ୍କର ଯେଉଁ ଅସୀମ ପ୍ରୀତି ଜନ୍ମି ଥିଲା, ଏହି ରାମାୟଣ ତା'ର ମୂଳଦୁଆ ଥିଲା । ରାମାୟଣ ପାରାୟଣ ତାଙ୍କ ମନରେ ଗଭୀର ଛାପ ପକାଇଥିଲା । ଗାନ୍ଧିଜୀ ତୁଳସୀ ରାମାୟଣକୁ ଭକ୍ତି ଗ୍ରନ୍ଥମାନଙ୍କର ସର୍ବୋତ୍ତମ ବୋଲି କହୁଥିଲେ । କେତେ ମାସ ପରେ ରାଜ୍‌କୋଟ୍ ଆସିବା ପରେ ଗାନ୍ଧିଜୀଙ୍କର ରାମରକ୍ଷା ପଢ଼ିବା ବନ୍ଦ ହୋଇଯାଇ ଥିଲା । ରାମାୟଣ ପାଠ ବି ହେଉ ନଥିଲା । କେବଳ ଏକାଦଶୀ ଦିନ ନିଶ୍ଚୟ ଭାଗବତ ପଢ଼ା ହେଉଥିଲା । ରାଜକୋଟରେ ରହିବାବେଳେ ସବୁ ସମ୍ପ୍ରଦାୟ ପ୍ରତି ସମାନ ଭାବ ରଖିବାର ଶିକ୍ଷା ଗାନ୍ଧିଜୀଙ୍କୁ ମିଳିଥିଲା । ସେ ହିନ୍ଦୁ ଧର୍ମର ପ୍ରତ୍ୟେକ ସମ୍ପ୍ରଦାୟକୁ ଆଦର କରିବା ଶିଖିଥିଲେ । ତାଙ୍କର ବାପା, ମା ବିଷ୍ଣୁ ମନ୍ଦିର, ଶିବ ମନ୍ଦିର ଏବଂ ଶ୍ରୀରାମ ମନ୍ଦିରକୁ ଯାଉଥିଲେ । ଗାନ୍ଧୀ ଓ ତାଙ୍କ ଭାଇମାନେ ସାଙ୍ଗରେ ଯାଉଥିଲେ । ଏହାଛଡ଼ା ଗାନ୍ଧିଜୀଙ୍କ ବାପାଙ୍କ ପାଖକୁ ଜୈନ ଧର୍ମାଚାର୍ଯ୍ୟମାନଙ୍କ ଭିତରୁ କେହି କେହି ସବୁଦିନେ ଆସି ତାଙ୍କ ସଙ୍ଗେ ଧର୍ମ ଓ ସାଧାରଣ ଆଚାର ବ୍ୟବହାର ସମ୍ପର୍କରେ କଥାବାର୍ତ୍ତା କରୁଥିଲେ । ବେଳେବେଳେ ହିନ୍ଦୁ ପଣ୍ଡିତ, ମୁସଲମାନ୍ ଓ ପାର୍ସି ବନ୍ଧୁମାନେ ଆସି ଧର୍ମ ଆଲୋଚନା କରୁଥିଲେ । ତାଙ୍କ ବାପା ଖୁବ୍ ସମ୍ମାନର ସହ ସେମାନଙ୍କର ଆଲୋଚନା ଆନନ୍ଦରେ ଶୁଣୁଥିଲେ ଏବଂ ଭିକ୍ଷା ଦେଉଥିଲେ । ଏହି ସବୁ କଥାବାର୍ତ୍ତା ବେଳେ ଗାନ୍ଧିଜୀ ତାଙ୍କ ଅସୁସ୍ଥ ଶଯ୍ୟାଶାୟୀ ବାପାଙ୍କର 'ନର୍ସ' ହୋଇଥିବାରୁ ଅନେକ ସମୟରେ ଉପସ୍ଥିତ ରହୁଥିଲେ । ସେ ବିଶେଷ କିଛି ବୁଝି ନପାରୁଥିଲେ ବି ସେ ସମସ୍ତ ବାତାବରଣର ପ୍ରଭାବ ଗାନ୍ଧିଜୀଙ୍କ ଉପରେ ଏପରି ଭାବରେ ପଡ଼ିଥିଲା ଯେ, ତାଙ୍କ ଭିତରେ ସବୁ ଧର୍ମ ପ୍ରତି ସମାନ ଭାବ ଜାତ ହୋଇଥିଲା । କିନ୍ତୁ ବାପା କାବା ଗାନ୍ଧୀଙ୍କ ଅପେକ୍ଷା ମା' ପୁତୁଳୀ ବାଈଙ୍କ ସାଧୁ ପ୍ରକୃତି ଓ ଧର୍ମିଷ୍ଠ ଆଚରଣ ଗାନ୍ଧିଜୀଙ୍କ ମନରେ ସ୍ଥାୟୀ ପ୍ରଭାବ ପକାଇଥିଲା । ୬୨ ବର୍ଷ ବୟସରେ ଗାନ୍ଧିଜୀ କହିଥିଲେ, ମୋ ଭିତରେ ତୁମେ ଆଜି ଯେଉଁ ପବିତ୍ରତା ଦେଖୁଛ, ତାହା ମୁଁ ମୋ ବାପାଙ୍କଠାରୁ ନୁହେଁ, ମା'ଙ୍କଠାରୁ ପାଇଛି । ମାଁଙ୍କୁ ସେ ଆଦୌ ଡରୁ ନଥିଲେ ଏବଂ ତାଙ୍କୁ ଅତ୍ୟନ୍ତ ସ୍ନେହ ଓ ଭକ୍ତି କରୁଥିଲେ । ପୁତୁଳୀ ବାଈଙ୍କର ଜୀବନ କେବଳ ବ୍ରତ ଓ ଉପବାସରେ କଟିଥିଲା । ସେ ଜଣେ ଅତି ସାଧ୍ୱୀ, ଧର୍ମପରାୟଣା ସ୍ତ୍ରୀ ଥିଲେ । ପୂଜା ପାଠ ନକରି ସେ କେବେ ଖାଉ ନଥିଲେ । ସବୁ ଦିନ ମନ୍ଦିରକୁ ଯାଉଥିଲେ । କେତୋଟି ମନ୍ଦିର କେବଳ ଗାନ୍ଧୀ କୁଟୁମ୍ବଙ୍କର ବୋଲି କୁହାଯାଉଥିଲା । ଦିନ ତମାମ୍ ନିର୍ଜଳ ଉପବାସ ରହିଲେ ସେ ଝାଉଁଳି ଯାଉନଥିଲେ ଏବଂ ସ୍ୱତଃପ୍ରବୃତ୍ତ ହୋଇ ବହୁ କଠିନରୁ କଠିନ ବ୍ରତ ଓ ଉପବାସ ନିଷ୍ଠାର ସହ ପାଳୁଥିଲେ । ବେମାର ଅବସ୍ଥାରେ ବି ସେ କୌଣସି ବ୍ରତ ଛାଡୁ ନଥିଲେ । ମାଙ୍କ ବ୍ରତ ସମ୍ପର୍କରେ ଗାନ୍ଧିଜୀ ଏକ କୌତୁହଳଜନକ କଥା ଲେଖିଛନ୍ତି । ପୁତୁଳୀ ବାଈ ପ୍ରତି ବର୍ଷ ଚାତୁର୍ମାସ୍ୟା ବ୍ରତ କରନ୍ତି । ବର୍ଷେ ସେ ବର୍ଷା ଋତୁ ମାସପାଏ ଦିନେ ଛାଡ଼ି ଦିନେ ନିର୍ଜଳ ଉପବାସ କରିଥିଲେ । ଆଉ ଥରେ ଚାତୁର୍ମାସ୍ୟାରେ ପୁତୁଳୀ ବାଈ ବ୍ରତ କଲେ ସୂର୍ଯ୍ୟଙ୍କୁ ଦେଖିଲେ ଯାଇ ଖାଇବେ । ସେଇ ଋତୁମାସ ଗାନ୍ଧିଜୀ ଓ ଅନ୍ୟ ପିଲାମାନେ ସମସ୍ତେ ଆକାଶକୁ ଅନେଇଁ ବସିଥାନ୍ତି । କେତେବେଳେ ସୂର୍ଯ୍ୟ ଦେଖାଯିବେ ଓ ମା' ଖାଇବେ । ଚାତୁର୍ମାସ୍ୟାରେ ସୂର୍ଯ୍ୟ ଖୁବ୍ କମ୍ ଦେଖାଯାନ୍ତି । ସହଜରେ ଦେଖାହୁଏ ନାହିଁ । ଏମିତି ଦିନେ ଗାନ୍ଧିଜୀ ଓ ଅନ୍ୟମାନେ ସୂର୍ଯ୍ୟଙ୍କୁ ଦେଖି "ମା' ମା' ସୂର୍ଯ୍ୟ ଦେଖାଗଲେଣି" । କହିବାରୁ ପୁତୁଳୀ ବାଈ ଧଡ଼ପଡ଼ ହୋଇ ଆସୁ ଆସୁ ସୂର୍ଯ୍ୟ ଲୁଚିଗଲେ । 'ନାହିଁ, ନାହିଁ, ଆଜି କପାଳରେ ଖାଇବା ହେବ ନାହିଁ' କହି ସେ ପୁଣି ଘର କାମରେ ଲାଗି ଯାଇଥିଲେ ।

ଛଅ, ସାତ ବର୍ଷରୁ ଆରମ୍ଭ କରି ଷୋହଳ ବର୍ଷ ପର୍ଯ୍ୟନ୍ତ ପାଠ ପଢ଼ି ମଧ୍ୟ କେଉଁ ବିଦ୍ୟାଳୟରୁ ଗାନ୍ଧିଜୀ ଧର୍ମ ଶିକ୍ଷା ପାଇ ନଥିଲେ । ନିଜ ଶିକ୍ଷକମାନଙ୍କଠାରୁ ସେ କିଛି ଜାଣିପାରି ନଥିଲେ । ତଥାପି ନିଜ ପରିବାରରୁ ପରିବେଶରୁ ସେ ଏତିକି ଜାଣି ପାରିଥିଲେ ଯେ ଧର୍ମ ଅର୍ଥାତ୍ ଆସ୍ଥା ଭାବନା, ଆତ୍ମ ଜ୍ଞାନ । ତାଙ୍କର ଜନ୍ମ ବୈଷ୍ଣବ ସମ୍ପ୍ରଦାୟରେ ହୋଇଥିବାରୁ ସେ ଅନେକ

ସମୟରେ ବିଷ୍ଣୁ ମନ୍ଦିରକୁ ଯାଉଥିଲେ ମଧ୍ୟ ବିଷ୍ଣୁ ମନ୍ଦିର ତାଙ୍କୁ ଭଲ ଲାଗୁ ନଥିଲା । ମନ୍ଦିରରେ ପ୍ରଚଳିତ ଅନୀତି କଥା ଶୁଣି ସେ ବିଷୟରେ ତାଙ୍କ ମନ ଉଦାସ ହୋଇଯାଉଥିଲା । ମନ୍ଦିରରୁ ସେ କିଛି ପାଇ ନଥିଲେ । ନିଜ ଆତ୍ମ କଥାର ପ୍ରଥମ ଖଣ୍ଡ 'ସତ୍ୟର ପ୍ରୟୋଗ'ରେ ଗାନ୍ଧିଜୀ ଲେଖିଛନ୍ତି, ମୁଁ ମନ୍ଦିରରୁ ଯାହା ପାଇ ନଥିଲି ତାହା ମୋ ଧାଈ ରମ୍ଭା ପାଖରୁ ପାଇଥିଲି । ସେ ଆମ କୁଟୁମ୍ବର ଜଣେ ପୁରୁଣା ଚାକରାଣୀ । ତା'ର ସ୍ନେହ ମୋର ଆଜି ମଧ୍ୟ ମନେ ଅଛି । ମୋର ଭୂତ ପ୍ରେତ ଡର ଥିଲା । ତା'ର ଔଷଧ 'ରାମ ନାମ' ବୋଲି ରମ୍ଭା ମୋତେ ବୁଝେଇ ଥିଲା । ମୋର ତ ରାମ ନାମଠାରୁ ରମ୍ଭା ଉପରେ ବେଶୀ ଶ୍ରଦ୍ଧା ଥାଏ । ସେଥି ପାଇଁ ପିଲା ବୟସରେ ମୁଁ ଭୂତ ପ୍ରେତ ଭୟରୁ ରକ୍ଷା ପାଇବା ପାଇଁ ରାମ ନାମ ଜପିବାକୁ ଆରମ୍ଭ କରିଥିଲି । ତାହା ବେଶୀ ଦିନ ଟିକି ନଥିଲା । ମାତ୍ର ଯେଉଁ ମଞ୍ଜି ପିଲାଦିନେ ପୋତା ହୋଇଥିଲା, ତାହା ବୃଥା ଯାଇ ନଥିଲା । ରାମ ନାମ ଆଜି ମୋ ପାଇଁ ଅମୋଘ ବଳ ହୋଇଛି । ତା'ର କାରଣ ସେହି ରମ୍ଭା ବାଈ ପୋତିଥିବା ମଞ୍ଜିରେ ଅଛି ବୋଲି ମୋର ମତ ।

ଏହି ରାମ ନାମର ପ୍ରଭାବ ଗାନ୍ଧିଜୀଙ୍କ ଉପରେ ଏତେ ଥିଲା ଯେ, ସେ ଯେତେବେଳେ ଆତତାୟୀର ଗୁଳିରେ ଢଳି ପଡ଼ିଲେ, ସେତେବେଳେ ତାଙ୍କ ଓଠରୁ ମାତ୍ର ଦୁଇଟି ଶବ୍ଦ ବାହାରିଥିଲା 'ହେ ରାମ' ! ତେଣୁ ଏହି ଆଲୋଚନାରୁ ଜଣାପଡୁଛି ଯେ, ଗାନ୍ଧିଜୀଙ୍କର ରାଜନୀତି ଓ ଜନସାଧାରଣଙ୍କ ସମସ୍ୟା ଉପରେ କୌଣସି ଧାରଣା ହେବା ପୂର୍ବରୁ ଧର୍ମ ସମ୍ପର୍କରେ ସାଧାରଣ ଜ୍ଞାନ ସୃଷ୍ଟି ହୋଇଥିଲା ।

କିନ୍ତୁ କୋଡ଼ିଏ ବର୍ଷ ହେବା ଯାଏଁ ଗାନ୍ଧିଜୀଙ୍କର ଧର୍ମ ସାହିତ୍ୟ ଉପରେ କୌଣସି ଗଭୀର ଚେତନା ବିସ୍ତାର ନଥିଲା । ଅନ୍ୟାନ୍ୟ ଧର୍ମଗ୍ରନ୍ଥ ପଢ଼ିବା ତ ଦୂରର କଥା, ଗାନ୍ଧିଜୀ ଭଗବତ୍ ଗୀତା ମଧ୍ୟ ପଢ଼ି ନଥିଲେ କି ସେ ବିଷୟରେ କିଛି ଜାଣି ନଥିଲେ । ହିନ୍ଦୁ ହୋଇ କୋଡ଼ିଏ ବର୍ଷ ଯାଏ ଗୀତା ନପଢ଼ିବା ଲଜ୍ଜାର କଥା ବୋଲି ସେ ସ୍ୱୀକାର କରିଛନ୍ତି । ଲଣ୍ଡନ ଯିବାର ବର୍ଷେ ପରେ ସେ ପ୍ରଥମେ ସଂସ୍କୃତ ଗୀତାକୁ ଇଂରାଜୀରେ ଅନୁବାଦ କରିଥିବା ସାର୍ ଏଡ୍‌ୱିନ୍ ଆର୍ନୋଲ୍‌ଡ୍‌ଙ୍କର ଦିବ୍ୟ ସଙ୍ଗୀତ (Song Celestial) ନାମରେ ପଢ଼ି ଗୀତାର ପରିଚୟ ପାଇଲେ । ଏହି ଗୀତାକୁ ସେ ତତ୍ତ୍ୱ ଜ୍ଞାନ ପାଇଁ ସର୍ବୋତ୍ତମ ଅମୂଲ୍ୟ ଗ୍ରନ୍ଥ ବୋଲି କହୁଥିଲେ । ଗାନ୍ଧିଜୀଙ୍କ ମତରେ ଗୀତା ଧର୍ମ ଉପଦେଶମୂଳକ ଗୋଟିଏ ରୂପକ । ଏଥିରେ ବର୍ଣ୍ଣିତ ଯୁଦ୍ଧ କ୍ଷେତ୍ର ମଣିଷର ମନ (ଆତ୍ମା) । ସତ୍ ପ୍ରବୃତ୍ତିର ପ୍ରତୀକ ଅର୍ଜୁନ ଅସତ୍ ପ୍ରବୃତ୍ତିର ବିରୁଦ୍ଧରେ ଲଢୁଛନ୍ତି । କୃଷ୍ଣ ହେଉଛନ୍ତି ମାନବର ଅନ୍ତର୍ଦ୍ଦେଶରେ ଅବସ୍ଥିତ ସଦ୍ ବିବେକ, ଯେକି ଶୁଦ୍ଧ ହୃଦୟକୁ ସତତ ପ୍ରେରଣା ଦେଉଛନ୍ତି । ୧୯୨୫ ମସିହା ଅଗଷ୍ଟ ୬ ତାରିଖରେ ୟଙ୍ଗ ଇଣ୍ଡିଆ ପତ୍ରିକାରେ ଗାନ୍ଧିଜୀ ଲେଖିଥିଲେ, ଯେତେବେଳେ ମୋ ମନ ସଂଶୟାକୁଳ ହୁଏ, ଯେତେବେଳେ ମୁଁ ନୈରାଶ୍ୟର ସମ୍ମୁଖୀନ ହୁଏ, ଦିଗ୍‌ବଳୟର ଗୋଟିଏ ହେଲେ ଆଲୋକ ରେଖା ମୋତେ ନ ଦିଶେ, ସେତେବେଳେ ମୁଁ ଭଗବତ୍ ଗୀତାର ପୃଷ୍ଠା ଲେଉଟାଇ ମୋତେ ସବୁବେଳେ ସୁଖ ଲାଗିଲା ପରି ଗୋଟିଏ ଶ୍ଳୋକ ଖୋଜି ବାହାର କରେ । ସଙ୍ଗେ ସଙ୍ଗେ ଗଭୀର ଅବସାଦ ଭିତରେ, ମୋ ମୁହଁରେ ସ୍ମିତରେଖା ଫୁଟି ଉଠେ । ଆକସ୍ମିକ ଦୁଃଖ, ଶୋକରେ, ମୋ ଜୀବନ ଭରପୂର । ଭଗବତ୍ ଗୀତାର ଆଶୀର୍ବାଦରୁ ସେ ସବୁର ପ୍ରତ୍ୟକ୍ଷ ବା ପରୋକ୍ଷ ଚାପ ମୋ ମନରେ ସ୍ଥାୟୀ ହୋଇ ନାହିଁ । ତେଣୁ ଗୀତା ପଢ଼ିବାଠାରୁ ହିଁ ଗାନ୍ଧିଜୀଙ୍କର ଧର୍ମ ଓ ସତ୍ୟର ଅନୁସନ୍ଧାନ ସହ ପ୍ରକୃତ ଭାବେ ସାମିଲ୍ ହେବା ଆରମ୍ଭ ହୋଇଥିଲା । ସେ ଏକା ଧାରରେ ଜଣେ କର୍ମ ଯୋଗୀ, ଜ୍ଞାନ ଯୋଗୀ ଏବଂ ଭକ୍ତି ଯୋଗୀ ଥିଲେ । ଭଗବତ୍ ଶ୍ରୀକୃଷ୍ଣଙ୍କ ପରେ ଗାନ୍ଧିଜୀ ହେଉଛନ୍ତି ଦ୍ୱିତୀୟ ମହାନ୍ ଆତ୍ମା ଯାହାଙ୍କ ମଧ୍ୟରେ ତିନି ପ୍ରକାର ଯୋଗର ମିଳନ ଘଟିଥିଲା । ଜଣେ ସାଧାରଣ ଲୋକ ଏକାଧିକ ଯୋଗର ମାର୍ଗ ଅନୁସରଣ ନକରିବାକୁ ଗୀତାରେ ସତର୍କ କରି ଦିଆଯାଇଛି । କିନ୍ତୁ ଗାନ୍ଧିଜୀ ଥିଲେ ତା'ର ବ୍ୟତିକ୍ରମ ।

ଇଂଲଣ୍ଡରୁ ଫେରିବା ପରେ ଗାନ୍ଧିଜୀ ବମ୍ବେର ଜଣେ ଜୈନ ସଂସ୍କାରକ, ରାୟଚାନ୍ଦ୍ ଭାଇ ଯେ କି ଜଣେ ମୁକ୍ତା ବଣିକ ଓ କବି ଥିଲେ, ତାଙ୍କ ସଂସର୍ଗରେ ଆସିବାରୁ ତାଙ୍କର ଧର୍ମ ସମ୍ପର୍କରେ ଜାଣିବାର ଇଚ୍ଛା ବହୁଗୁଣିତ ହୋଇ ଯାଇଥିଲା । ରାୟଚାନ୍ଦ ଭାଇ ଜଣେ ଜୈନ ହେଲେ ମଧ୍ୟ ସେ ଗାନ୍ଧିଜୀଙ୍କୁ ହିନ୍ଦୁ ଧର୍ମର ସମସ୍ତ ମୂଲ୍ୟବାନ୍ ଗ୍ରନ୍ଥ ପଢ଼ିବାକୁ ଉତ୍ସାହିତ କରିଥିଲେ । ଗାନ୍ଧିଜୀଙ୍କର ଜନ୍ମଗତ ଧର୍ମ ହିନ୍ଦୁ ଧର୍ମ ପ୍ରତି ବେଶୀ ଆକର୍ଷିତ ହେବାର ବହୁ କାରଣ ସେ ଦର୍ଶାଇଛନ୍ତି । ଗାନ୍ଧିଜୀ କହିଛନ୍ତି ଯେ ଯଦିଓ ସବୁ ଧର୍ମରେ ଅହିଂସା କଥା କୁହାଯାଇଛି, ହିନ୍ଦୁ ଧର୍ମରେ 'ଅହିଂସା' ସବୁଠାରୁ ବେଶୀ ପ୍ରକାଶିତ ହୋଇଛି । ଅନ୍ୟାନ୍ୟ ଧର୍ମ ତୁଳନାରେ ଏହି ଧର୍ମ ସବୁଠାରୁ ବେଶୀ ସହନଶୀଳ ଅଟେ । ବିଶ୍ୱର ସମସ୍ତ ଧର୍ମର ଉପାସନା ପାଇଁ ଏଥିରେ ସ୍ଥାନ ରହିଛି । ନିଜର ବିଶ୍ୱାସ ବା ଧର୍ମ ଅନୁସାରେ ପ୍ରତ୍ୟେକ ବ୍ୟକ୍ତି ପରମେଶ୍ୱରଙ୍କୁ ଉପାସନା କରିବାକୁ ହିନ୍ଦୁ ଧର୍ମ କହି ଏହା ସବୁ ଧର୍ମ ସହ ଶାନ୍ତିପୂର୍ଣ୍ଣ ସହାବସ୍ଥାନ କରିବାକୁ ନିର୍ଦ୍ଦେଶ ଦିଏ । ଯଦି ହିନ୍ଦୁ ଧର୍ମ ଇସ୍‌ଲାମୀ ବା ଅଣ–ହିନ୍ଦୁମାନଙ୍କୁ ଘୃଣା ଭାବର ଶିକ୍ଷା ଦିଏ ତା'ହେଲେ ତା'ର ଧ୍ୱଂସ ଅନିବାର୍ଯ୍ୟ । ରାମ ରାଜ୍ୟ ଅର୍ଥ ହିନ୍ଦୁ ରାଜ୍ୟ ବୋଲି ଗାନ୍ଧିଜୀ କହୁ ନଥିଲେ । ତାଙ୍କ ମନରେ ରାମ ରାଜ୍ୟର ଅର୍ଥ ଥିଲା ପରମେଶ୍ୱରଙ୍କର ରାଜ୍ୟ, ଯେଉଁଠି ରାମ୍ ଓ ରହିମ୍ ଏକ୍ ଭଗବାନ୍ । ଗାନ୍ଧିଜୀ ନିଜକୁ ଜଣେ ସନାତନୀ ହିନ୍ଦୁ ବୋଲି କହୁଥିଲେ । ହିନ୍ଦୁ ଧର୍ମ କହେ ସମସ୍ତେ ଈଶ୍ୱରଙ୍କର ସନ୍ତାନ, ନିଜପରି ସମସ୍ତଙ୍କୁ ଭାବ । କିନ୍ତୁ ହିନ୍ଦୁ ଧର୍ମରେ ଥିବା ଅସ୍ପୃଶ୍ୟତା ଗାନ୍ଧିଜୀଙ୍କୁ ବଡ଼ ଅସହ୍ୟ ବୋଧ ହୋଉଥିଲା । ସେ ଏହାକୁ ଏକ 'ଚୀଭତ୍ସ ପ୍ରଥା' ବୋଲି ଆଖ୍ୟା ଦେଇ କହିଥିଲେ ଯେ, ଏହି ନାଳି ଘା' ଭିତରେ ଭିତରେ ମାଡ଼ିଯାଇ ହିନ୍ଦୁ ଧର୍ମର ମଜ୍ଜାକୁ ନଷ୍ଟ କରି ଦେଉଛି । ସେ ବିଶ୍ୱାସ କରୁଥିଲେ ଅସ୍ପୃଶ୍ୟତା ହିନ୍ଦୁ ଧର୍ମରେ ଉଠିଥିବା ଗୋଟିଏ ବାତୁଡ଼ି ପରି । ଏହା ଦ୍ୱାରା ହିନ୍ଦୁ ଧର୍ମ ବିକୃତ ହୋଇଯାଇଛି । ସନାତନୀ ହିନ୍ଦୁମାନେ ଗାନ୍ଧିଜୀଙ୍କର ଏହି ମତକୁ ଗ୍ରହଣ କରୁ ନଥିଲେ । ଗାନ୍ଧିଜୀଙ୍କର ଶସ୍ତା ଲୋକପ୍ରିୟତା ପାଇଁ ଲୋଭ ନଥିଲା । ସେ ନିଜେ ଜଣେ ଧର୍ମନିଷ୍ଠ ହିନ୍ଦୁ ଭାବରେ ନିଜ ଧର୍ମକୁ ନିଷ୍କଳୁଷ କରିବା ଉଦ୍ଦେଶ୍ୟରେ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଏହାର ପ୍ରକ୍ଷାଳନ ପାଇଁ ଉଦ୍ୟମ କରିଥିଲେ । ସେ ମତବ୍ୟକ୍ତ କରିଥିଲେ ଯେ, ମୁଁ ହିନ୍ଦୁ ଧର୍ମକୁ ଭଲ ପାଇବା ଓ

ବିଶ୍ୱାସ କରିବାର ବ୍ୟର୍ଥ ନୁହେଁ । ମୁଁ ଏହାର ପ୍ରତିଟି ଶବ୍ଦକୁ ବିନା ଦ୍ୱିଧାରେ ଗ୍ରହଣ କରିଛି । ଯେଉଁ ଧର୍ମ ତତ୍ତ୍ୱ ସବୁ ନୈତିକତା ସହ ଦ୍ୱନ୍ଦ୍ୱ ସୃଷ୍ଟି କରୁଛନ୍ତି, ସେଗୁଡ଼ିକୁ ମୁଁ ପ୍ରତ୍ୟାଖ୍ୟାନ କରିବି । ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀ ଟଲ୍‌ଷ୍ଟୟଙ୍କ 'ସ୍ୱର୍ଗ ତୁମ ଭିତରେ ଅଛି' ବହି ଓ ଅନ୍ୟାନ୍ୟ କେତୋଟି ଧର୍ମଗ୍ରନ୍ଥ ପଢ଼ିବା ପରେ ତାଙ୍କର ଧର୍ମ ସମ୍ବନ୍ଧୀୟ ଜ୍ଞାନ ଆହୁରି ସମ୍ପ୍ରସାରିତ ହେବାରେ ଲାଗିଲା ।

ଗାନ୍ଧିଜୀ କହିଥିଲେ ଯେ, ସବୁ ଧର୍ମର ଚରମ ଲକ୍ଷ୍ୟ ହେଉଛି ଆତ୍ମ-ଦର୍ଶନ । ପ୍ରଭୁଙ୍କ ସାକ୍ଷାତ୍‌କାର ବା ମୋକ୍ଷ ଲାଭ ଯାହା କେବଳ ଭଗବତ୍-ବିଶ୍ୱାସ ଓ ସତ୍ୟର ସନ୍ଧାନ ଦ୍ୱାରା ହିଁ ସମ୍ଭବ । ପରମେଶ୍ୱରଙ୍କୁ ପାଇବାକୁ ହେଲେ ତାଙ୍କୁ ତାଙ୍କ ସୃଷ୍ଟି ଭିତରେ ଖୋଜିବାକୁ ପଡ଼ିବ । ଭଗବାନ୍‌ଙ୍କର ପରିଚୟ ସେବାରୁ ହିଁ ମିଳେ । ଏହି ଧାରଣାରେ ସେ ସେବା ଧର୍ମକୁ ଗ୍ରହଣ କରିଥିଲେ । ଭାରତର ସେବା କରୁଥିଲେ । ସେ ସମାଜ ସେବାରେ ମନଧ୍ୟାନ ଦେଇ ମଜ୍ଜି ଯିବାର ପ୍ରଧାନ କାରଣ ଆତ୍ମ-ଦର୍ଶନ ବୋଲି ପ୍ରକାଶ କରିଛନ୍ତି ।

ସତ୍ ଧର୍ମ ଏବଂ ସତ୍ ନୈତିକତା ପରସ୍ପର ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ମାଟିରେ ପୋତା ହୋଇଥିବା ମଞ୍ଜି ପାଇଁ ଜଳର ଯେପରି ଗୁରୁତ୍ୱ ଅଛି ସେହିପରି ଧର୍ମ ପାଇଁ ନୈତିକତାର ଗୁରୁତ୍ୱ ରହିଛି । ଈଶ୍ୱରଙ୍କ ଉପରେ ଅଖଣ୍ଡ ଦୃଢ଼ ବିଶ୍ୱାସ ହିଁ ଗାନ୍ଧିଜୀଙ୍କ ଧର୍ମଚେତନାର ମୂଳଭିତ୍ତି । ସେ କହୁଥିଲେ, ତାଙ୍କର ସତ୍ୟ ଓ ଭଗବାନଙ୍କ ପ୍ରତି ଆସକ୍ତି ଓ ନିଷ୍ଠା ତାଙ୍କୁ ରାଜନୀତି କ୍ଷେତ୍ରକୁ ଟାଣି ଆଣିଛି । ଯେଉଁମାନେ କହନ୍ତି ଧର୍ମର ରାଜନୀତି ସହ କୌଣସି ସମ୍ପର୍କ ନାହିଁ ସେମାନେ ପ୍ରକୃତ ଧର୍ମ କ'ଣ ଜାଣନ୍ତି ନାହିଁ । ଧର୍ମ ବିନା ରାଜନୀତି ହେଉଛି ଏକ ମରଣର ଯନ୍ତା ସଦୃଶ, ଯାହା ମଣିଷର ଆତ୍ମାକୁ ହତ୍ୟା କରିଦିଏ ।

ପରମେଶ୍ୱରଙ୍କ ବିଷୟରେ ଗାନ୍ଧିଜୀ ଅତ୍ୟନ୍ତ ବିସ୍ତୃତ ଭାବରେ ବ୍ୟାଖ୍ୟା କରିଛନ୍ତି । ସେ କହୁଥିଲେ ଯେ ଭଗବାନ୍‌ଙ୍କର କୌଣସି ସମ୍ପୂର୍ଣ୍ଣ ସଂଜ୍ଞା ଦେଇ ହେବ ନାହିଁ । ତାଙ୍କୁ ଆମେ ଅନୁଭବ କରିପାରୁ କିନ୍ତୁ ଜାଣିପାରୁ ନାହିଁ । ସେ ହେଉଛନ୍ତି ସତ୍ୟ ଏବଂ ପ୍ରେମ, ଆଲୋକ ଓ ଜୀବନର ଉତ୍ସ ଏବଂ ସେ ଆମ ସମସ୍ତଙ୍କର ଊର୍ଦ୍ଧ୍ୱରେ । କିନ୍ତୁ ୧୯୨୯ ମସିହା ବେଳକୁ ସତ୍ୟ ହିଁ ଈଶ୍ୱର ବୋଲି ବର୍ଣ୍ଣନା କଲେ । ଏହାର କାରଣ ଦର୍ଶାଇ ସେ ମତବ୍ୟକ୍ତ କରିଥିଲେ ଯେ, ଦୀର୍ଘ ପ୍ରଚାଳିଶ ବର୍ଷ ଧରି ସତ୍ୟର ଅନୁସନ୍ଧାନ କରି ମୁଁ ଏହା ଜାଣିପାରିଛି ଯେ ପ୍ରେମ ମାଧ୍ୟମରେ ହିଁ ସତ୍ୟର ନିକଟବର୍ତ୍ତୀ ହୁଏ । କିନ୍ତୁ ଏତି ପ୍ରେମର ବିଭିନ୍ନ ଅର୍ଥ ମୁଁ ଜାଣିବାକୁ ପାଇଛି । ଅଥଚ କେଉଁଠାରେ ମୁଁ ସତ୍ୟର ଏକାଧିକ ଅର୍ଥ ପାଇନାହିଁ । ତେଣୁ ଏହି କାରଣରୁ ମୁଁ ସତ୍ୟ ହିଁ ପରମେଶ୍ୱର ବୋଲି କହିବାକୁ ଅଧିକ ଯୁକ୍ତିଯୁକ୍ତ ମନେ କରୁଛି । ଜଣେ ନୀତିବାନ୍ ହେବା ପାଇଁ ସେ କୌଣସି ନିର୍ଦ୍ଦିଷ୍ଟ ଧର୍ମାବଲମ୍ବୀ ହେବା ନିହାତି ଜରୁରୀ ନୁହେଁ । ସେ ହିନ୍ଦୁ ହେଉ, ମୁସଲମାନ୍ ହେଉ, ଶିଖ୍ ବା ପାର୍ସି, ତା'ର ସମସ୍ତ ମାନବ ସମାଜ ଓ ପ୍ରାଣୀ ସମାଜ ପ୍ରତି ସହାନୁଭୂତି ରହିବା ଉଚିତ୍ । ବିଶ୍ୱାସ, ପ୍ରାର୍ଥନା ଓ ଆତ୍ମ ଶୃଙ୍ଖଳା ବିନା ନୈତିକତା ବେଶୀ ଦିନ ମାଏ ତିଷ୍ଠି ରହିପାରିବ ନାହିଁ । ଜଣେ ସତ୍ୟାଗ୍ରହୀର ଭଗବାନଙ୍କ ଉପରେ ଗଭୀର ଆସ୍ଥା ରହିବା ଉଚିତ୍ । ପୃଥିବୀରେ ଯାହା ଘଟୁଛି ତାହା ଭଗବାନ୍‌ଙ୍କ ଇଚ୍ଛାନୁସାରେ ହେଉଛି ଏବଂ ସେ ଇଚ୍ଛା କଲେ ସବୁ ଅସମ୍ଭବ ମଧ୍ୟ ସମ୍ଭବ ହୋଇ ପାରିବ ବୋଲି ସେ ବିଶ୍ୱାସ କରିବା ଉଚିତ୍ । ଏହାଛଡ଼ା ଜଣେ ସତ୍ୟାଗ୍ରହୀ ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କରିବା ଉଚିତ୍ । ଈଶ୍ୱରଙ୍କ ଉପରେ ଏହି ଅଟଳ ବିଶ୍ୱାସ ଯୋଗୁଁ ଦକ୍ଷିଣ ଆଫ୍ରିକାରେ ଥିଲାବେଳେ ଗାନ୍ଧିଜୀ ତାଙ୍କର ବୀମା ପଲିସିକୁ ଛାଡ଼ି ଦେଇଥିଲେ । କାରଣ ସେ ବିଶ୍ୱାସ କରୁଥିଲେ ଯେ, ପରମେଶ୍ୱରଙ୍କର ଆଶୀର୍ବାଦ ଦ୍ୱାରା ତାଙ୍କର ଭବିଷ୍ୟତ ସମ୍ପୂର୍ଣ୍ଣ ସୁରକ୍ଷିତ । ନିଜ ଚିନ୍ତାଧାରାର ସମ୍ପ୍ରସାରଣ କରି ସେ ପ୍ରକାଶ କରିଥିଲେ ଯେ, ଭବିଷ୍ୟତର ଗର୍ଭରେ ଆମ ପାଇଁ କ'ଣ ଅଛି, ତାହା ଜାଣିବା ଅନୁମତି ଆମକୁ ଦିଆଯାଇ ନାହିଁ । ବହୁ ସମୟରେ ଆମର ପୂର୍ବ ପରିକଳ୍ପିତ ଯୋଜନା ସବୁ କାର୍ଯ୍ୟକାରୀ ହୋଇ ନପାରି ପରିବର୍ତ୍ତନ ହୋଇଯାଏ । ତେଣୁ ଆମେ ଏହି ଅନିଶ୍ଚିତ ଭବିଷ୍ୟତ ପ୍ରତି ଆଦୌ ବ୍ୟସ୍ତ ନହୋଇ ସେ ସବୁ ସମ୍ପୂର୍ଣ୍ଣ ଭାବେ ଭଗବାନ୍‌ଙ୍କ ଇଚ୍ଛା ଉପରେ ଛାଡ଼ିଦେବା ହେଉଛି ସବୁଠାରୁ ବିଜ୍ଞୋଚିତ କାର୍ଯ୍ୟ ।

ଗାନ୍ଧିଜୀ ସ୍ତୁତି, ଉପାସନା ଓ ପ୍ରାର୍ଥନାର ଗୁରୁତ୍ୱ ତାଙ୍କ ଜୀବନରେ ବୁଝିଥିଲେ । ତାଙ୍କ ମତରେ ଏଗୁଡ଼ିକ ସବୁ କୁସଂସ୍କାର ନୁହେଁ ବରଂ ଆମର ଖାଇବା, ପିଇବା, ଚାଲିବା, ବସିବା, ଯେମିତି ସବୁ ଗୋଟିଏ ଗୋଟିଏ ସତ୍ୟ, ତା'ଠୁ ବଳି ସେ ସବୁ ଅଧିକ ସତ୍ୟ । ଏହା ହିଁ ସତ୍ୟ, ଆଉ ସବୁ ମିଥ୍ୟା, ଏହା କହିବା ବାହୁଲ୍ୟ ହେବ ନାହିଁ । ଗାନ୍ଧିଜୀ କହୁଥିଲେ : ପ୍ରାର୍ଥନା କେବଳ ଶବ୍ଦର ବିଳାପ ନୁହେଁ । ସେ ସବୁର ମୂଳ କଣ୍ଠରେ ନୁହେଁ ହୃଦୟରେ । ଆମର ହୃଦୟ ଯଦି ସେମିତି ନିର୍ମଳ ହୁଏ, ସେଠାରେ ଥିବା ସବୁ ତା'ର ସ୍ୱରଗୁଡ଼ିକ ଥାଏ, ସେଥିରୁ ଯେଉଁ ସ୍ୱର ବାହାରେ, ତାହା ଆକାଶ ଛୁଇଁ ଉଠିଥାଏ । ସେଥିପାଇଁ ଜିଭର ଲୋଡ଼ା ନାହିଁ । ଏହା ପ୍ରାର୍ଥନାର ଏକ ଅଦ୍ଭୁତ ବସ୍ତୁ । କାମ ବାସନା ଭଳି ମଇଳାକୁ ଶୁଦ୍ଧ କରିବା ପାଇଁ ହୃଦୟର ପ୍ରାର୍ଥନା ଜଡ଼ିବୁଟି ଭଳି କାମ କରିଥାଏ । ଏଥିରେ ମୋର ସନ୍ଦେହ ନାହିଁ । କିନ୍ତୁ ସେ ଆଶୀର୍ବାଦ ପାଇଁ ଆମର ପୁରାପୁରି ନମ୍ରତା ଲୋଡ଼ା । ଆତ୍ମଶୁଦ୍ଧି ପାଇଁ ପ୍ରାର୍ଥନା ଆବଶ୍ୟକ ଏବଂ ସମାଜର ଗରିବ ଲୋକଙ୍କର ସେବା ସବୁଠାରୁ ବଡ଼ ପ୍ରାର୍ଥନା ବୋଲି ସେ କହୁଥିଲେ । ଆତ୍ମଶୁଦ୍ଧି ଆତ୍ମ ଶୃଙ୍ଖଳା ଉପରେ ନିର୍ଭର କରିଥାଏ ଏବଂ ଏହି ଆତ୍ମ-ଶୃଙ୍ଖଳା, ତାଙ୍କ ମତରେ, ପାଞ୍ଚଟି ବ୍ରତ ମାର୍ଗ ଦ୍ୱାରା ହିଁ ପ୍ରାପ୍ତ ହୋଇଥାଏ । ସେଗୁଡ଼ିକ ହେଲା ସତ୍ୟ, ଅହିଂସା, ଅସ୍ତେୟ, ଅପରିଗ୍ରହ ଓ ବ୍ରହ୍ମଚର୍ଯ୍ୟ । 'ସତ୍ୟ' କହିଲେ ସତ୍ କର୍ମ, ସତ୍ ବଚନ ଏବଂ ସତ୍ ଚିନ୍ତାକୁ ବୁଝାଏ । ଅହିଂସାକୁ ଗାନ୍ଧିଜୀ ସତ୍ୟର ଆତ୍ମା ବୋଲି କହୁଥିଲେ । ତାଙ୍କ ମତରେ ଜଣେ ଧର୍ମ ସଚେତନ ଲୋକ କାୟ ମନୋବାକ୍ୟରେ ଅହିଂସ ନହୋଇ ରହିପାରିବ ନାହିଁ । ସେହିପରି ଧର୍ମ ଓ ସତ୍ୟର ଜୀବନ ପାଇଁ ଅସ୍ତେୟ ଓ ଅପରିଗ୍ରହ ମଧ୍ୟ ଆବଶ୍ୟକ । ଅନ୍ୟମାନଙ୍କ ଚିନ୍ତା ଓ ଭାବନାକୁ ଚୋରୀ ନ କରିବା ହେଉଛି ଅସ୍ତେୟ । ଅପରିଗ୍ରହର ଅର୍ଥ ହେଲା ନିଜର ଅଭାବ ଓ ଆବଶ୍ୟକତାକୁ ସର୍ବନିମ୍ନ କରିବା ସହ ଭବିଷ୍ୟତ ପାଇଁ କିଛି ସଞ୍ଚୟ କରି ନରଖିବା ଏବଂ ଅନ୍ୟମାନଙ୍କର ଧନ ସମ୍ପତ୍ତି ପ୍ରତି ଲୋଭ ନକରିବା । ଗାନ୍ଧିଜୀ ବ୍ରହ୍ମଚର୍ଯ୍ୟକୁ ଅତି ବିସ୍ତୃତ ଅର୍ଥରେ ଗ୍ରହଣ କରିଥିଲେ ।

ମତରେ ବ୍ରହ୍ମଚର୍ଯ୍ୟର ଅର୍ଥ ମନ, ବଚନ ଓ କର୍ତ୍ତବ୍ୟରେ ସର୍ବଦା ଇନ୍ଦ୍ରିୟମାନଙ୍କୁ ଆୟତ୍ତ କରିବା । ସେ ଦକ୍ଷିଣ ଆଫ୍ରିକାରେ ଥିବାବେଳେ ବ୍ରହ୍ମଚର୍ଯ୍ୟ ବ୍ରତ ଗ୍ରହଣ କରିଥିଲେ ଏବଂ ଏହାକୁ ଶେଷ ଜୀବନ ପର୍ଯ୍ୟନ୍ତ ପାଳନ କରିଥିଲେ ।

ଧର୍ମ କଦାପି ଜଣେ ମଣିଷକୁ ଅନ୍ୟଠାରୁ ଅଲଗା କରିଦିଏ ନାହିଁ, ବରଂ ସେମାନଙ୍କୁ ବାନ୍ଧି ଦିଏ ବୋଲି ଗାନ୍ଧିଜୀ ବହୁବାର ପ୍ରକାଶ କରିଥିଲେ । ସେ ଥରେ ସୂଚନା ଦେଇଥିଲେ ଯେ, ମୋ ସ୍ୱପ୍ନର ଭାରତରେ କେବଳ ଗୋଟିଏ ଧର୍ମ ରହୁ, ସମ୍ପୂର୍ଣ୍ଣ ହିନ୍ଦୁ ବା ସମ୍ପୂର୍ଣ୍ଣ ମୁସଲମାନ ତାହା ମୁଁ ଚାହେଁନା । ବରଂ ମୁଁ ଚାହେଁ ସବୁ ଧର୍ମର ଉପାସନା ପାଇଁ ଭାରତ ସହନଶୀଳ ହେଉ । ୧୯୩୧ ମସିହାରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ସଭାପତିତ୍ୱରେ କରାଚୀରେ କଂଗ୍ରେସ ଅଧିବେଶନରେ ଏକ ସ୍ୱାଧୀନ ଭାରତର ଭବିଷ୍ୟତ ସରକାରଙ୍କର ବିଭିନ୍ନ ମୌଳିକ ଅଧିକାର ଓ ଅନ୍ୟାନ୍ୟ ବିଷୟ ଉପରେ ପ୍ରସ୍ତାବ ଗୃହୀତ ହୋଇଥିଲା । ଗାନ୍ଧିଜୀଙ୍କର ସ୍ୱୀକୃତି ଓ ସମର୍ଥନରେ ଭବିଷ୍ୟତର ମୁକ୍ତ ଭାରତ ସବୁ ଧର୍ମ କ୍ଷେତ୍ରରେ ନିରପେକ୍ଷତା ଅବଲମ୍ବନ କରିବ ବୋଲି ଘୋଷଣା କରାଯାଇଥିଲା, ପରେ ବିଶେଷ କରି ତାଙ୍କର ଆଗ୍ରହ ଓ ପ୍ରେରଣା ଯୋଗୁଁ ଭାରତରେ ଏକ ଧର୍ମ ନିରପେକ୍ଷ ସମ୍ବିଧାନ ପ୍ରଣୀତ ହେଲା ଯାହାକି ପ୍ରତିଟି ନାଗରିକଙ୍କୁ ଧର୍ମ କ୍ଷେତ୍ରରେ ସ୍ୱାଧୀନତା ଦେଲା ଏବଂ ରାଷ୍ଟ୍ରକୁ ଧର୍ମଠାରୁ ଦୂରେଇ ନେଲା । ରାଷ୍ଟ୍ରର କୌଣସି ନିର୍ଦ୍ଦିଷ୍ଟ ଧର୍ମ ରହିଲା ନାହିଁ । କାରଣ ଧର୍ମ ହେଉଛି ବ୍ୟକ୍ତିର ବ୍ୟକ୍ତିଗତ ବିଷୟ ଦକ୍ଷିଣ ଏସିଆର ଦୁଇ ଜଣ ଜାତି ନିର୍ମାତାଙ୍କ ଭିତରୁ ଯେତେବେଳେ ଜିନ୍ନା ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମକୁ ନେଇ ଗୋଟିଏ ସ୍ୱତନ୍ତ୍ର ରାଷ୍ଟ୍ର (ପାକିସ୍ଥାନ) ପାଇଁ ଆନ୍ଦୋଳନ ଚଳାଇଥିଲେ, ସେତେବେଳେ ଗାନ୍ଧିଜୀଙ୍କର ବିସ୍ତୃତ ଧର୍ମ ଚେତନା ହିଁ ଏକ ଧର୍ମ ନିରପେକ୍ଷ ଭାରତକୁ ବାଟ ଦେଖାଇଥିଲା ।

ଆଜି କିନ୍ତୁ ଦେଶରେ କେତେକ ବିଭେଦକାରୀ ଶକ୍ତି ଦ୍ୱାରା ଧର୍ମକୁ ବିକୃତ କରାଯାଇ ପ୍ରକୃତ ଧର୍ମ ବିଷୟରେ ଜନସାଧାରଣଙ୍କୁ ଅବଗତ କରା ନଯାଇ, ସେମାନଙ୍କ ଅଶିକ୍ଷା ଓ ଅନ୍ଧ ବିଶ୍ୱାସର ସୁଯୋଗ ନେଇ ସେମାନଙ୍କୁ ହିଂସ୍ର କରିଦିଆ ଯାଉଛି ଏବଂ ସାମ୍ପ୍ରଦାୟିକତା ଭାବ ସୃଷ୍ଟି ହୋଇ ରକ୍ତପାତ ହେବାରେ ଲାଗିଛି । ଏହା ଦ୍ୱାରା ଆମ ଦେଶର ଯୁଗ ଯୁଗର ଐକ୍ୟ ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପରମ୍ପରା ଦୋହଲି ଯାଇଛି । ଭୌଗୋଳିକ ବିଚ୍ଛିନ୍ନତା ମୁଣ୍ଡ ଟେକିଛି । ଧର୍ମ ଲୋକମାନଙ୍କୁ ଏକତାର ସୂତ୍ରରେ ନବାନ୍ଧି ସେମାନଙ୍କୁ ଅଧିକରୁ ଅଧିକ ଭାଗ ଭାଗ କରି ପାଶବିକ ପ୍ରବୃତ୍ତିର ଉଦ୍ରେକ କରି ଚାଲିଛି । ଭାରତୀୟ ଗଣତନ୍ତ୍ରର ଧର୍ମ ନିରପେକ୍ଷତା ଆଜି ଏକ ଭୟାନକ ମୁକାବିଲାର ସମ୍ମୁଖୀନ ହୋଇଛି । ତେଣୁ ଏପରି ଏକ ପରିସ୍ଥିତିରେ, ଜାତୀୟ ଏକତା, ସାମ୍ପ୍ରଦାୟିକ ସଦ୍‌ଭାବ ଏବଂ ଶାନ୍ତି, ମୈତ୍ରୀ ଓ ପ୍ରୀତିର ଜୀବନ ପାଇଁ ଆମେ ସମସ୍ତେ ଜାତିର ପିତା, ମହାତ୍ମା ଗାନ୍ଧୀଙ୍କର 'ଧର୍ମ'ର ପ୍ରକୃତ ବିଶ୍ଳେଷଣକୁ ଅନୁସରଣ କରିବା ଏକାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଛି ।

**ସହାୟକ ଗ୍ରନ୍ଥସୂଚୀ :**


(୧) Mahatma Gandhi – A Biography—B.R. Nanda,-Oxford University Press.

(୨) Gandhi To day-J.D. Sethi—Vikas Publishing House.

(୩) Sangh Parivar's Hindutva Versus The Real Hindu Ethos—A. B. Bardhan, Communist Party of India Publication.

(୪) ଆତ୍ମ କଥା – ସତ୍ୟର ପ୍ରୟୋଗ – ମୋହନ ଦାସ କରମ ଚାନ୍ଦ ଗାନ୍ଧୀ, ଅନୁବାଦ–ଗୋପବନ୍ଧୁ ଚୌଧୁରୀ ଗାନ୍ଧୀ ସ୍ମାରକନିଧି (ଉତ୍କଳ), କଟକ ।

(୫) ମହାତ୍ମା ଗାନ୍ଧୀଙ୍କ ଜୀବନୀ–ଲୁଇ ଫିସର୍, ଅନୁବାଦ–ଚିନ୍ତାମଣି ମିଶ୍ର–ଗାନ୍ଧୀ ସାହିତ୍ୟ କମିଟି, ଓଡ଼ିଶା, ନବ ଜୀବନ ପ୍ରେସ ।

(୬) Mahatma Gandhi's Religiosity–Dimensions and Dynamics—S.C. Gangal-Employment News 3-9 April, 1993.



ଅଧ୍ୟାପକ, ଅର୍ଥନୀତି ବିଭାଗ,
ଆଞ୍ଚଳିକ ସନ୍ଧ୍ୟାକାଳ ମହାବିଦ୍ୟାଳୟ,
ସୁନ୍ଦରପୁର, ଯାଜପୁର-୭୫୫୦୧୩ ।




# ଏକ ବହୁ ଚର୍ଚ୍ଚିତ ଚିନ୍ତନ

## (ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି)

ରମେଶ ଚନ୍ଦ୍ର ରଥ

ଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ବିଭୂଷିତ କରିବା ପାଇଁ ଉପାଧି ଅଳଙ୍କାରର ଅଭାବ ନାହିଁ । ସେ ଏକାଧାରରେ ଜଣେ ମେଧାବୀ, ଶିକ୍ଷାବିତ୍, ଅର୍ଥନୀତିଜ୍ଞ, ସମାଜ ଶାସ୍ତ୍ରବିତ୍, ଆଇନଜ୍ଞ, ବାଗ୍ମୀ, ସାହିତ୍ୟିକ, ସମ୍ବିଧାନବିତ୍ ତଥା ସମୀକ୍ଷକ ଭାବେ ସ୍ୱୀକୃତ ଓ ସମ୍ମାନିତ । ଉତ୍କଳ ବିଶ୍ୱ ବିଦ୍ୟାଳୟ ଥିଲା ତାଙ୍କ ଶୁଚିତାଙ୍କର ପ୍ରତିଭାର ମୁଖ୍ୟ ପ୍ରୟୋଗଶାଳା । ଓଡ଼ିଶା ହାଇକୋର୍ଟର ସେ ଜଣେ ବହୁଚର୍ଚ୍ଚିତ ଅଧିବକ୍ତା । ପ୍ରାୟ ସବୁ ବିଭାଗରେ ସେ ଦୃଷ୍ଟାନ୍ତଯୋଗ୍ୟ ହୋଇ ପାରିଥିଲେ । ଛୟତ୍ରୀ ବର୍ଷ ବୟସରେ ସେ ନିର୍ବାକ, ନିଶ୍ଚିନ୍ତ ହେଲେ ଏବଂ ଏ ଭୂମିରୁ ଭୂମୀକୁ ନିଷ୍କ୍ରାନ୍ତ ହେଲେ, ଏଥିରେ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ଅସ୍ୱାଭାବିକ ମନେ ହୁଏ ତାଙ୍କର ସିଦ୍ଧି–ସାଧନା, ସିଦ୍ଧାନ୍ତ । ଏତେ ବଡ଼ ଶକ୍ତି ଧୀମତାରେ ଗଢିତ, ସତ୍ତା– ଶୋଭ୍ୟ ଭାବମୂର୍ତ୍ତିଙ୍କ ନିକଟରେ ସମସ୍ତ ପଦ–ପଦବୀ, ଆଭିଜାତ୍ୟ, ବିଶେଷ ସମ୍ପଦ ତୁଛ ହୋଇଯାଏ । ଯଥାର୍ଥରେ ତାଙ୍କୁ ଜୀବନ୍ତ କମ୍ପ୍ୟୁଟର କୁହାଯାଏ । ତଥ୍ୟଗତ ଓ ତତ୍ତ୍ୱଗତ ତର୍ଜମା କରିବାରେ ତାଙ୍କର ଥିଲା ଅସାଧାରଣ ଦକ୍ଷତା । ଥରେ ସେ ଯାହା ଦେଖୁଥିଲେ, ପଢୁଥିଲେ ତାହା ଅବିକଳ ତାଙ୍କ ସ୍ମୃତିପଟରେ ଖୋଦିତ ହୋଇଯାଉଥିଲା ଏବଂ ପୁନରୁଚ୍ଚରିତ ହୋଇପାରୁ ଥିଲା । ଏଭଳି ଏକ ପ୍ରଖର ସ୍ମୃତିକୋଷର ଅଧିକାରୀ ହେବା ବାସ୍ତବିକ ଏକ ଦୈବୀ କୃପା ଭଳି ମନେ ହୁଏ । ତାଙ୍କର ଶିକ୍ଷା, ଦୀକ୍ଷା, ଚିନ୍ତା, ଚେତନା ସବୁବେଳେ ଆହ୍ୱାନମୟ ହୋଇ ଆସିଥିଲା । ଜଣେ ବୌଦ୍ଧିକ ଯୋଦ୍ଧା ଭାବରେ ସେ ଦଳ ମତ ନିର୍ବିଶେଷରେ ସମସ୍ତଙ୍କର ଶ୍ରଦ୍ଧା ଦାବୀ କରିପାରୁ ଥିଲେ । ତାଙ୍କର ଅଗଣିତ ଛାତ୍ର ବହୁ କ୍ଷେତ୍ରରେ ସୁପ୍ରତିଷ୍ଠିତ । ସେ ଥିଲେ ବିଶ୍ୱସ୍ତ୍ରାସୀ ଶିକ୍ଷକ, ଦିକ୍‌ଦର୍ଶକ । ଜୀବନର ସବୁ ବାସ୍ତବତାକୁ ସେ ଗ୍ରହଣ କରୁଥିଲେ ମଧ୍ୟ ସେ ଥିଲେ ତା'ରି ଭିତରେ ଅ–ବସ୍ତୁ ବିସ୍ମୟ !!

ଡକ୍ଟର ଦାଶ, ଆମର ପ୍ରିୟ ଶ୍ରୀରାମବାବୁ ଆଜି ନାହାନ୍ତି, ଆଉ କେବେ ବି ଆସିବେ ନାହିଁ, ଏଇ କଥା ଘୋଷିତ ହେଲା ପରେ, ସେ ଥିଲାବେଳେ ତାଙ୍କ ଆସିବାର ପ୍ରତିଶ୍ରୁତି, ସମ୍ଭାବନା, ପ୍ରତିକ୍ଷା ଯେ, ଚିରଦିନ ପାଇଁ ହରାଇବାକୁ ପଡ଼ିଲା ଏଭଳି ଏକ ଶୋକାର୍ତ୍ତ ପରିବେଶ ସୃଷ୍ଟି ହୋଇଗଲା । ସେ ଯେଉଁଠିକି ଗଲେ, ସେଠାରୁ ଥରେ ଯେ କେହି ଗଲେ ଆଉ ଫେରନ୍ତି ନାହିଁ, ସମସ୍ତେ ଯିବେ କିନ୍ତୁ ତାଙ୍କ ଭଳି କିଏ ରହିଯିବ ଖାଲି ଗୋଟିଏ ଅବଶୋଷ ଆଉ ରହିଲା ରହିଲା ଦୈନ୍ୟ ଦୁଃଖ ଆଉ ଅସ୍ୱସ୍ତିର ହାହାକାର ସୃଷ୍ଟି କରି, ସେଇଟି ହିଁ ତାଙ୍କ ମୃତ୍ୟୁ ପରେ ଆମ ଭିତରେ ଗୋଟିଏ ଅତୃପ୍ତ ବ୍ୟାକୁଳତା । ଏହା ହେଉଛି ତାଙ୍କର ବିଶେଷତ୍ୱ । ମୃତ୍ୟୁକୁ ଉପେକ୍ଷା କରିବା ପାଇଁ ଯଦି କେହି ଖୋଜୁଥାଏ, ତେବେ ତାଙ୍କରି ସିଦ୍ଧି, ସାଧନାର ଧାରାକୁ ଅନୁସରଣ କରିବା ଉଚିତ । ତାଙ୍କ ଶରୀର ଅବସାନ ହୋଇଛି ସତ, କିନ୍ତୁ ସେ ସୂକ୍ଷ୍ମ ଶରୀରରେ ରୂପାୟିତ ହୋଇ ସାରିଛନ୍ତି ବହୁ ପୂର୍ବରୁ । ସେ ଛାଡ଼ିଯାଇଥିବା ଅମୂଲ୍ୟ ସାରସ୍ୱତ କୃତିରେ ଏବଂ ସେ ଚିରକାଳ ଉଦୀପିତ ରହିବେ ଯଦି ସେ ସବୁକୁ ଆମେ ଅନୁଧ୍ୟାନ କରିପାରିବା । ତାହା ହିଁ ହେବ ଆମ ପାଇଁ ଏବଂ ଭବିଷ୍ୟତ ପାଇଁ ସାନ୍ତ୍ୱନା, ପାଥେୟ ଏବଂ ତାଙ୍କ ସ୍ମୃତିର ଯଥାର୍ଥ ଅବଲମ୍ବନ ।

ଜୀବନର ଶେଷ ଭାଗରେ ସେ ପୁଟ୍ଟାପର୍ତ୍ତୀର ସତ୍ୟସାଇ ବାବାଙ୍କ ସଂସର୍ଶରେ ଆସି ତାଙ୍କର ଆଧ୍ୟାତ୍ମିକ ଦୃଷ୍ଟିକୁ ଖୋଲି କରିଥିଲେ । ସେ ଯେ କେବଳ ବୈଷୟିକ ବାସ୍ତବତାକୁ ତର୍ଜମା କରି ବିଶ୍ଳେଷଣ କରିବାରେ ତା'ର ସତ୍ୟାସତ୍ୟ ନିରୂପଣ କରିବାରେ ସାମର୍ଥ୍ୟ ଅର୍ଜନ କରିଥିଲେ ବୋଲି ଅଦ୍ୱିତୀୟ ଧୀମତାର ପ୍ରତୀକ ହୋଇ ପାରିଥିଲେ ତା'ନୁହେଁ, ତାଙ୍କ ଭିତରେ ସେଇ ଶାଶ୍ୱତ ପ୍ରଜ୍ଞା ଓ ସତ୍ୟ ସନ୍ଧିତ୍ସାର ଉଦଗ୍ର ବାଳଟି ଜୀବନର ଅସ୍ତିତ୍ୱତାକୁ ସ୍ୱୀକାର କରି ଉନ୍ମୋନ୍ମେଷିତ ହୋଇ ପରିତୃପ୍ତି ଲାଭ କରିଥିଲା । 'ସତ୍ୟସାଇ' ଥିଲେ ସେଇ ପ୍ରଚ୍ଛନ୍ନ ପ୍ରତିଭାର ଚୂଡ଼ାନ୍ତ ଲକ୍ଷ୍ୟ ଏବଂ ଶ୍ରୀରାମବାବୁ ତାଙ୍କରି ପାଖରେ ଆପଣାକୁ ଉତ୍ସର୍ଗ କରି ନିଶ୍ଚିନ୍ତ ହୋଇ ପାରିଥିଲେ । ସାଇ ଆଶ୍ରିତ ହେବା ପରେ ସେ ନିଜର ସଂସାରିକ ଦାୟିତ୍ୱକୁ ଏଡ଼େଇ ଦେବାର ଚେଷ୍ଟା କରି ନାହାନ୍ତି ବରଂ ଆହୁରି ସମ୍ଭ୍ରମତାର ସହିତ ସଂସାରିକ ଜ୍ଞାନ କୌଶଳକୁ, ଦକ୍ଷତା ଓ ସାମର୍ଥ୍ୟକୁ ଦିବ୍ୟ ସଂଯୋଜନାରେ ପରିଶିଳିତ କରିଥିଲେ । ଅପ୍ରତିରୋଧ ଏହି ଶାଣିତ ମନୀଷା, ପରିବ୍ୟାପ୍ତ ଦିବ୍ୟ ପ୍ରେମ ଭକ୍ତିର ଅନନ୍ତ ଦିଗନ୍ତକୁ ଯେପରି ଲମ୍ଫ ପ୍ରଦାନ କରି ଆପଣାର ସତ୍ୟ ସ୍ୱରୂପକୁ ସାକ୍ଷାତ୍ କରି ପ୍ରଶାନ୍ତି ନିଳୟର ଅନ୍ତେବାସୀ ହୋଇଗଲେ । ତାଙ୍କର ପାର୍ଥିବ ଅଧିବାସୀତ୍ୱର ଇତିହ ଇତିହାସ ହୋଇ ରହିଲେ । ସେ ହୋଇଗଲେ ସମ୍ପୂର୍ଣ୍ଣ ଭାବରେ ଏକ ଆଧ୍ୟାତ୍ମିକ ନବ ଜନ୍ମର ଉଜ୍ଜ୍ୱଳ ଯାତ୍ରିକ । ସେହି ଚିର ଜ୍ୟୋତି ମାମ୍ଭୂତଙ୍କ ଅନ୍ତର୍ହିତ ହେଲେ ମଧ୍ୟ ପ୍ରତିବିମ୍ବିତ ।

ଚେତନା ଭବନ,
ସ୍ୱର୍ଗଦ୍ୱାରୀଆଗଞ୍ଜ ମଠ ସାହି, କଟକ-୪

# ଶରତର ଆଗମନୀ ଓ ଉତ୍କଳର ପର୍ବପର୍ବାଣୀ

ଶ୍ରୀ ସତ୍ୟବ୍ରତ ମନ୍ତ୍ରୀ

ଉତ୍କଳର ଇତିହାସ ବଡ଼ ବୈଚିତ୍ର୍ୟପୂର୍ଣ୍ଣ । ବାର ମାସରେ ତେର ପର୍ବ ପାଳନ ପୂର୍ବକ ଜୀବନର କ୍ଳାନ୍ତିର ଅବସାନ ମେଣ୍ଟାଇବାର ଏକ ଆୟୁଧ । ବିଶେଷ କରି ଓଡ଼ିଶାର ଲୋକମାନେ ଶସ୍ୟ ବା କୃଷି ଉପରେ ନିର୍ଭର କରନ୍ତି ଏବଂ ସେମାନଙ୍କର ଧାନ ହେଲା ପ୍ରଧାନ ଫସଲ । ବର୍ଷା ଋତୁର ଆଗମନରେ ମନରେ ହରଷ ଫୁଟାଇ କୃଷକ ତା'ର ବର୍ଷକର ଆହାର ପାଇବା ପାଇଁ ଏବଂ ପିଲାମାନଙ୍କର ମୁହଁରେ ଆହାର ଗଣ୍ଡାଏ ଦେବା ପାଇଁ ଆଷାଢ଼ ଏବଂ ଶ୍ରାବଣ ମାସରେ ହାଡ଼ଭଙ୍ଗା ପରିଶ୍ରମ କରି ଶସ୍ୟ ଧାନଁ/ସୁଷାର ବେଉଷଣ ସମାପନ କରିଦିଏ । ଏହି ବର୍ଷା ଋତୁରେ ନିର୍ଭର ଗଣ୍ଡକୁ ପାଣିକରି ବହୁ କଷ୍ଟରେ ବର୍ଷକର ଆହାର ନିମନ୍ତେ କରିଥିବା ପରିଶ୍ରମରୁ ମୁକ୍ତି ପାଇବା ନିମନ୍ତେ ଶରତ ଋତୁରେ ବିଭିନ୍ନ ପ୍ରକାର ପର୍ବପର୍ବାଣୀ ପାଳନ ପୂର୍ବକ ବିଶେଷ ଆନନ୍ଦ ଉପଭୋଗ କରିଥାଏ । ସେଥି ମଧ୍ୟରୁ (୧) ଗଣେଶ ପୂଜା, (୨) ନୂଆଖାଇ ପର୍ବ, (୩) ବିଶ୍ୱକର୍ମା ପୂଜା, (୪) ଗୁରୁ ଦିବସ ଇତ୍ୟାଦି ଅନ୍ୟତମ ।

## ଗୁରୁ ଦିବସ :

ଗୁରୁବାଦ ଏକ ମହାନ ପରମ୍ପରା । ପରମ ପୂଜ୍ୟ ଗୁରୁମାନଙ୍କର ଅତୁଳନୀୟ ଓ ଅବିସ୍ମରଣୀୟ ଅବଦାନରେ ଏ ଦେଶର ଶିକ୍ଷା, ସଂସ୍କୃତି ଓ ଇତିହାସ ସମୃଦ୍ଧ ହୋଇପାରିଛି । ବହୁ ପୁରାତନ କାଳରୁ ଗୁରୁକୁଳ ଆଶ୍ରମମାନ ସ୍ଥାପନ କରାଯାଇ ଶିକ୍ଷାଦାନ କରିବାର ବ୍ୟବସ୍ଥା ଥିଲା । ଗୁରୁକୁଳାଶ୍ରମଠାରୁ ଆରମ୍ଭ କରି ଆଧୁନିକ ଶିକ୍ଷା ପ୍ରଣାଳୀ ପର୍ଯ୍ୟନ୍ତ ଶିକ୍ଷା ବ୍ୟବସ୍ଥାକୁ ଅବଲୋକନ କଲେ ଜଣାଯାଏ ଯେ ଏହା ଯୁଗୋପଯୋଗୀ ହୋଇପାରିଛି । ସେତେବେଳର ଶିକ୍ଷା–ଶ୍ରୁତ, ସ୍ମୃତି, ବେଦ, ଉପନିଷଦ, ଧନୁର୍ବିଦ୍ୟା ଓ ତନ୍ତ୍ରବିଦ୍ୟା ମଧ୍ୟରେ ସୀମିତ ରହୁଥିବା ବେଳେ ଆଧୁନିକ ଯୁଗର ଶିକ୍ଷା ପ୍ରଣାଳୀରେ ବିପୁଳ ପରିବର୍ତ୍ତନ ଘଟିଛି । ସମୟ ଓ ପରିସ୍ଥିତି ଅନୁସାରେ ବିଦ୍ୟାର ପରିପ୍ରକାଶରେ ଅଶେଷ ଉନ୍ନତି ଘଟି ପାରିଛି । ସେ ଯାହା ହେଉନା କାହିଁକି ଯେ କୌଣସି ଶିକ୍ଷା ପ୍ରଣାଳୀରେ ଗୁରୁ ବା ଶିକ୍ଷକଙ୍କ ସ୍ଥାନ ନିଶ୍ଚିତ ଭାବେ ଗୁରୁତ୍ୱପୂର୍ଣ୍ଣ ।

'ଗୁରୁ' ଶବ୍ଦ ଅର୍ଥଗତ ଦୃଷ୍ଟିରୁ ବିଚାର କଲେ "ଶ୍ରେଷ୍ଠତ୍ୱ"ର ପ୍ରମାଣ ମିଳେ । ପାଞ୍ଚ ପ୍ରକାର ଗୁରୁଙ୍କ ମଧ୍ୟରେ ବର୍ତ୍ତମାନ ଯୁଗରେ ବିଦ୍ୟା ଗୁରୁଙ୍କ ସ୍ଥାନ ଅତି ଉଚ୍ଚରେ, କାରଣ ବିଦ୍ୟା ଗୁରୁ ଅନ୍ୟ ଗୁରୁଙ୍କର କାର୍ଯ୍ୟ କରିବା ଅତି କଷ୍ଟକର ବ୍ୟାପାର ସେଥିପାଇଁ ଶିକ୍ଷକମାନଙ୍କୁ ସମ୍ମାନ ଜଣାଇ ସରକାରୀ ସ୍ତରରେ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠି ଗଠନ କରାଯାଇଛି । ଦୁଃସ୍ଥ ଓ ଅଭାବଗ୍ରସ୍ତ ଶିକ୍ଷକ, ଶିକ୍ଷୟିତ୍ରୀ ଓ ସେମାନଙ୍କ ପରିବାରବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇଦେବା ପାଇଁ ଏହି ପାଣ୍ଠି ଉଦ୍ଦିଷ୍ଟ । ବିଶେଷ ଭାବରେ ଆଲୋଚନା କରିବାକୁ ଗଲେ 'ଗୁ' ଶବ୍ଦର ଅର୍ଥ ଅନ୍ଧକାର 'ରୁ' ଶବ୍ଦର ଅର୍ଥ ଦୂର କରିବା । ଗୋଟିଏ ଶିଶୁକୁ ଶିକ୍ଷାଦାନ ପୂର୍ବକ ତା'ର ଜୀବନରେ ଥିବା ସମସ୍ତ ପ୍ରକାର ଅଜ୍ଞାନ ଅନ୍ଧକାର ଦୂରକରି ଏକ ପୂର୍ଣ୍ଣାଙ୍ଗ ମଣିଷ ଗଢ଼ି ତୋଳିବାକୁ ଯାଇ ବିଦ୍ୟାଗୁରୁମାନଙ୍କୁ କଠିନ ପରିଶ୍ରମ କରିବାକୁ ପଡ଼ିଥାଏ । ସେଥିପାଇଁ ପୂର୍ବ କାଳରୁ ଗୁରୁମାନଙ୍କର ପୂଜା ବନ୍ଦନା ପଦ୍ଧତି ରହି ଆସିଅଛି । ଘରର ମୁଖିଆମାନେ ପ୍ରଥମେ ତାଙ୍କର ଛୋଟପିଲାମାନଙ୍କ ଦ୍ୱାରା ଗୁରୁଙ୍କର 'ପୂଜାର୍ଚ୍ଚନା' କରିଥାନ୍ତି । ଉକ୍ତ ଦିନଟିକୁ 'ଗୁରୁ ଦିବସ' ରୂପେ ପାଳନ କରାଯାଇଥାଏ ।

## ଗଣେଶ ପୂଜା :

ଯେଉଁ ଶିଶୁଟି ଏ ଦେଶର, ଦଶର, ଯଶର ଏବଂ ଜାତିର ଭବିଷ୍ୟତ, ପ୍ରଥମେ ତା'ର ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଧ୍ୟାନ ଦେବା ଉଚିତ୍ । ସେଥି ନିମନ୍ତେ ତାହାରି ମାଧ୍ୟମରେ ତା'ର ମନରେ ପ୍ରଫୁଲ୍ଲ ଆଣିବା ନିମନ୍ତେ ଘରେ ଘରେ ବିଭିନ୍ନ ପ୍ରକାର 'ପର୍ବପର୍ବାଣୀ' ପାଳନ କରାଯାଇଥାଏ ଏବଂ ପାଠପଢ଼ା ତା'ର ପ୍ରଥମ କର୍ତ୍ତବ୍ୟ ବୋଲି ଧରାଯାଇଥାଏ । ତା'ର ଜ୍ଞାନ ଗରିମା ଉପରେ ଏ ଦେଶର, ଜାତିର ଯଶ କିର୍ତ୍ତୀ ନିର୍ଭର କରେ । ଜ୍ଞାନ ଏବଂ ବିଦ୍ୟାର ଭଣ୍ଡାର ପାଇବା ଆଶାରେ ଭକ୍ତିପୂତ ଭାବରେ ଏ ସମସ୍ତ ଅଧିକାରୀ ଦେବ ଶ୍ରୀଗଣେଶଙ୍କୁ ପୂଜା କରାଯାଇଥାଏ । ତାଙ୍କର ପୂଜାର୍ଚ୍ଚନା ମହାଆଡ଼ମ୍ବରରେ ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କରେ ଯଥାବିଧି ପାଳନ କରାଯାଇଥାଏ । ଏଠାରେ ସ୍ମରଣଯୋଗ୍ୟ ଯେ, ସିନ୍ଦୁରାରୁଣା ମୋଦକପ୍ରିୟ ମହାବିନାୟକ ଗଣନାଥ ହେଲେ ଗାଣପତ୍ୟ ସମ୍ପ୍ରଦାୟର ଆରାଧ୍ୟ ଦେବତା । ହିନ୍ଦୁ ଧର୍ମ ସଂସ୍କୃତିରେ ଖର୍ବକାୟ ସ୍ଥୂଳ ତନୁ, ପ୍ରକାଣ୍ଡ ଉଦର, ଗଜ ମୁଖ, ତେଣୁ ଏହାଙ୍କର ଏକ ବିଶିଷ୍ଟ ସ୍ଥାନ ଅଛି ।

## ନୂଆଖାଇ ପର୍ବ :

'ନୂଆଖାଇ' ଓଡ଼ିଶାର ପଶ୍ଚିମାଞ୍ଚଳ ଅଧିବାସୀମାନଙ୍କର ଶ୍ରେଷ୍ଠ ପର୍ବ ଭାବରେ ସର୍ବତ୍ର ପରିଚିତ । ଏହା ସମ୍ବଲପୁର, ସୁନ୍ଦରଗଡ଼,

ବଲାଙ୍ଗୀର, କଳାହାଣ୍ଡି, ବୌଦ, ଢେଙ୍କାନାଳ ଏବଂ ମଧ୍ୟପ୍ରଦେଶର ରାୟଗଡ଼ା, ରାୟପୁର ଏବଂ ବିଲାସପୁର ଜିଲ୍ଲାମାନଙ୍କରେ ମହାସମାରୋହରେ ପାଳିତ ହୁଏ । ଏହା ସାଧାରଣତଃ ଭାଦ୍ରମାସ ଶୁକ୍ଳ ପକ୍ଷର ଭିନ୍ନ ଭିନ୍ନ ତିଥିମାନଙ୍କରେ ବିଭିନ୍ନ ଅଞ୍ଚଳରେ ପାଳନ କରାଯାଇଥାଏ । ନୂଆଖାଇର ବିଶେଷତ୍ୱ ଏହି ଯେ ପଶ୍ଚିମ ଓଡ଼ିଶାର 'ନୂଆଖାଇ' ପର୍ବ ବିଭିନ୍ନ ତିଥିରେ ଠାକୁରାଣୀମାନଙ୍କର ନୂତନ ଅନ୍ନ ଭକ୍ଷଣ ରୂପେ ପ୍ରଚଳିତ । କିନ୍ତୁ ଏକ ଗୌରବର କଥା ଚଳିତ ବର୍ଷ ଏହା ଭାଦ୍ର ୫ମୀ ତିଥିରେ ପାଳନ କରାଯାଇଛି ।

ସମ୍ବଲପୁରର ସମଲେଶ୍ୱରୀ, ବଲାଙ୍ଗୀର ପାଟଣାର ପାଟଣେଶ୍ୱରୀ, ସୋନପୁରର ସୁରେଶ୍ୱରୀ, କଳାହାଣ୍ଡିର ମାଣିକେଶ୍ୱରୀ, ବୌଦ୍ଧ ଅଞ୍ଚଳର ମାହେଶ୍ୱରୀ ଏବଂ ପଦ୍ମପୁର ଅଞ୍ଚଳର ବିନ୍ଧ୍ୟବାସିନୀ ଦେବୀମାନଙ୍କ ପାଖରେ କ୍ଷୀର ନୂତନ ଅମଳ ଧାନର ଭୋଗ ପ୍ରଥମେ ସମର୍ପଣ କରାଯାଇଥାଏ । ଏ ଅଞ୍ଚଳର କୃଷକ ଯେତେବେଳେ ତା'ର ପ୍ରଥମ ଶସ୍ୟ (ଧାନ) ଉତ୍ପାଦନ କରେ, ସେ ଆନନ୍ଦରେ ବିଭୋର ହୋଇ ତା'ର ପ୍ରଥମ ଅର୍ଘ୍ୟ ନୈବେଦ୍ୟ ପୂର୍ବକ ତା'ର ଆରାଧ୍ୟ ଠାକୁରାଣୀଙ୍କ ପାଖରେ ସମର୍ପଣ କରିଥାଏ । ଏହି ସମୟରେ ଘରର ପ୍ରତ୍ୟେକ ସଦସ୍ୟଙ୍କ ଉପସ୍ଥିତିରେ ଘରର କୁଳ ଦେବତାଙ୍କୁ ମଧ୍ୟ ନୂତନ ଶସ୍ୟର ଅନ୍ନଭୋଗ ସମର୍ପଣ କରାଯାଏ । ଗାଁମାନଙ୍କରେ 'ଝାଙ୍କର' (ସମଲାଇଙ୍କ ପୂଜାରୀ) ଆଗରୁ ପ୍ରତ୍ୟେକ ଘରମାନଙ୍କରେ କିଛି କିଛି ପାଚିଲା ଧାନ ବଣ୍ଟନ କରିଥାଏ ଏବଂ ତା' ବଦଳରେ ଯଜମାନଙ୍କଠାରୁ କିଛି କିଛି ପାରିଶ୍ରମିକ ପାଇଥାଏ । ଏହି ପାଚିଲା ଧାନରେ ଅନ୍ନଭୋଗ କରାଯାଏ ଏବଂ ଏହା ହିଁ 'ନୂଆଖାଇ' ପର୍ବର ବିଶେଷତ୍ୱ ।

ନୂଆଖାଇର ଆଉ ଗୋଟିଏ ବିଶେଷତ୍ୱ ଏହି ଯେ ଏହି ଦିନ କୌଣସି କଂସା ବାସନ କିମ୍ବା ଧାତୁ ନିର୍ମିତ ସାମଗ୍ରୀରେ ନୂଆ ଅନ୍ନଭୋଗ ଖିଆ ନାହିଁ । ଜାତି, ବର୍ଣ୍ଣ ନିର୍ବିଶେଷରେ ଶାଳିପତ୍ର ଏବଂ ଦନା (ଡଲାଦନା) ତିଆରି କରାଯାଏ । ଯଥା :– ବ୍ରାହ୍ମଣ ସରସି (ତାଳପତ୍ର) କ୍ଷତ୍ରିୟ ମନ୍ଦୁଳପତ୍ର । ଗଉଡ ସାହାଡ଼ା ଆଦି ପତ୍ରର ତିଆରି ଖଲିମାନଙ୍କରେ ନୂଆ ଖାଆନ୍ତି । ଏହାକୁ "ଜୁହାର ଭେଟ" ପର୍ବ ମଧ୍ୟ କହିଥାନ୍ତି । ସେଦିନ ଘରର ସମସ୍ତେ ସକାଳୁ ଉପବାସରେ ରହନ୍ତି । କୁଳଦେବଦେବୀମାନଙ୍କ ପାଖରେ ଭୋଗ ଲାଗିଲା ପରେ, ଘରର ମୁରବୀ ସମସ୍ତଙ୍କୁ ନୂଆ ଚାଉଳର ଭୋଗ ସମର୍ପଣ କରନ୍ତି ଏବଂ ତାଙ୍କଠାରୁ ବୟସରେ ସାନ ସମସ୍ତେ ତାଙ୍କୁ ଜୁହାର କୁହନ୍ତି । ଏହା ବାଧ୍ୟତାମୂଳକ ଅଟେ । ଏହା ସମ୍ପୂର୍ଣ୍ଣ ଭାବେ ନିରାମିଷ ଭୋଜନ ଅଟେ ।

ଏହି ପର୍ବ କେତେ ପୁରାତନ ଏବଂ କେବେଠାରୁ ପାଳନ ହୋଇ ଆସୁଅଛି ତାହା କହିବା କଷ୍ଟସାଧ୍ୟ ହେଲେମଧ୍ୟ ଅନୁମାନ କରାଯାଏ ଯେତେବେଳେ ମନୁଷ୍ୟ ଜଙ୍ଗଲରେ ବୁଲୁଥିଲା କିମ୍ବା ... ବ୍ୟବହାର ଜାଣିନଥିଲା ଏବଂ ପ୍ରଥମେ ନୂଆକରି ... ଶିଖିଲା ସେବେଠାରୁ ଏହି ପର୍ବ ପାଳନ କରି ଆସୁଅଛି ।

## ବିଶ୍ୱକର୍ମା ପୂଜା :

ଦେବଦେବୀ ମନ୍ଦିରଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ଅଟ୍ଟାଳିକାମାନ ନିର୍ମାଣ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ... ଉପଯୋଗ କରି ଆସୁଅଛି । ସମସ୍ତ ପୃଥିବୀ ପୃଷ୍ଠରେ ସେହି ... ପୁରୁଷ 'ବିଶ୍ୱକର୍ମା'ଙ୍କର କଣିକାଏ ଆଶୀଷରୁ ସମ୍ପ୍ରତି ବିଜ୍ଞାନ ... ଅଶେଷ ଉନ୍ନତି ହୋଇପାରିଛି । ଫଳରେ ମଣିଷ ଦୈବ୍ୟ ଶକ୍ତି ଜୟକରି 'ପରାଶକ୍ତି' ଓ 'ଅପରାଶକ୍ତି'କୁ ଆୟତ୍ତ କରିପାରୁ ଯାଉଛି । ବିଶ୍ୱକର୍ମା ଜଗତ ନେତ୍ର, ବିଶ୍ୱକର୍ମା ... ବିଶ୍ୱକର୍ମା ଜଗନ୍ନାଥଃ, ବିଶ୍ୱକର୍ମାମିଦଂ ଜଗତ୍ । ସବୁ ... ସୃଷ୍ଟି ପ୍ରବକ୍ତା ବିଶ୍ୱାତ୍ମା ବିଶ୍ୱକର୍ମା ଗୋଟିଏ ନାମରେ ପୂଜା ପାଇ ଆସିଛନ୍ତି । ଲୌହ, କାଷ୍ଠ, ପ୍ରସ୍ତର, ତାମ୍ର, କାଂସ୍ୟ ଓ ସ୍ୱର୍ଣ୍ଣାଦି ... ଶିଳ୍ପ କଳାକୁ ପଞ୍ଚତତ୍ତ୍ୱରେ ସୁପରିସ୍ଫୁଟିତ କରି ଆସିଛନ୍ତି । ତାଙ୍କର ପଞ୍ଚପୁତ୍ର ମନୁ, ମୟ, ତ୍ୱଷ୍ଟା, ଶିଳ୍ପୀ ଓ ଦୈବଜ୍ଞ ଏହି ପଞ୍ଚ ଶିଳ୍ପକୁ ଧାରଣ କରିଛନ୍ତି । ବିଶ୍ୱ ଦକ୍ଷରେ ପଞ୍ଚଶିଳ୍ପ ବିଦ୍ୟାର ପ୍ରସାର ଓ ପ୍ରଚାର କରାଇ ପୃଥିବୀକୁ ଧାରଣ କରିବାରେ ପୂର୍ଣ୍ଣ କରିଛନ୍ତି ।

ବିଭିନ୍ନ ଯୁଗରେ ବିଶ୍ୱକର୍ମାଙ୍କର ବିବିଧ ରୂପରେଖ ଅଛି । ... ମଧ୍ୟରୁ କଳି ଯୁଗରେ ଦ୍ୱି–ଭୁଜଧାରୀ ବୃଦ୍ଧ ଅନନ୍ତ ମହାରଣା ରୂପରେ ଉତ୍କଳରେ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ, ଶ୍ରୀବଳରାମ ଓ ମା ସୁଭଦ୍ରାଙ୍କ ସମେତ ସୁଦର୍ଶନ ଚକ୍ର ନିର୍ମାଣ କରି ପୂର୍ଣ୍ଣ ... ଯୁଗପୁରୁଷୋତ୍ତମ ଜଗତର ନାଥ ଶ୍ରୀଜଗନ୍ନାଥଙ୍କଠାରେ ବିଶ୍ୱ ... ଲୀନ ହୋଇଯାଇଛନ୍ତି । ତେଣୁ ଏଠାରେ କୁହାଯାଇ ପାରେ ଯେ ବିଶ୍ୱକର୍ମା ସେହିଁ ଶ୍ରୀଜଗନ୍ନାଥ ।

ଏହି ଶରତ ଋତୁ ଆମକୁ ଭଦ୍ରବାଣୀ ଉଚ୍ଚାରଣ କରିବାକୁ, ଅନ୍ୟକୁ ଦ୍ୱେଷ ନକରିବାକୁ, ସମସ୍ତ ମଣିଷମାନଙ୍କ ମଧ୍ୟରେ ସଦ୍‌ଜ୍ଞାନ ଜାତ କରିବାକୁ ଆମକୁ ଶିକ୍ଷା ଦିଏ । ଅତଏବ ଆମେ ସମସ୍ତେ ଏକ ସ୍ୱରରେ କହିଉଠିବା "ଜଗନ୍ନାଥ ମହାପ୍ରଭୁଙ୍କ ଦୟା ପୂର୍ଣ୍ଣ ହେଉ" ।

କନିଷ୍ଠ ସହାୟକ,
କେନ୍ଦ୍ରାପଡ଼ା ପୌର ସଂସ୍ଥା, କେନ୍ଦ୍ରାପଡ଼ା ।

# ସମ୍ବଲପୁରର ଶୀତଳଷଷ୍ଠୀ ପର୍ବ

* ଡଃ ଚିତ୍ରସେନ ପଶାୟତ *

ପଶ୍ଚିମ-ଓଡ଼ିଶା ତା'ର ଗୌରବଶାଳୀ ଅତୀତ, ପ୍ରାଚୀନ ସଂସ୍କୃତି, କଳା ଓ ସ୍ଥାପତ୍ୟ ନିମନ୍ତେ ସର୍ବଦା ଏକ ସ୍ୱତନ୍ତ୍ର ସ୍ଥାନ ଦାବୀକରି ଆସିଛି । ବିଭିନ୍ନ ଦେବ-ଦେବୀଙ୍କ ପୀଠସ୍ଥଳୀ ରୂପେ ମଧ୍ୟ ଖ୍ୟାତିପ୍ରାପ୍ତ କରିଛି । ଏ କ୍ଷେତ୍ରରେ ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ସମଲେଶ୍ୱରୀ, ପାଟଣାଗଡ଼ର ପାଟଣେଶ୍ୱରୀ, ସୋନପୁରର ସୁରେଶ୍ୱରୀ, ନୃସିଂହନାଥର ନୃସିଂହଦେବ, ହରଦାଗ ଶିବ ମନ୍ଦିର, ସୋନପୁରର ପାପକ୍ଷୟ ଘାଟ, ରାଉରକେଲା ନିକଟସ୍ଥ ବେଦବ୍ୟାସ, କୋଲିଲି ଘୋଘରର ମହେଶ୍ୱର ପର୍ବତ ଓ ମହେଶ୍ୱର ମନ୍ଦିର, ବୁଢ଼ାରଜା ପର୍ବତର ଶୀର୍ଷ ଦେଶରେ ସ୍ଥିତ ବୁଢ଼ାରଜା ଶିବ ମନ୍ଦିର, ସମ୍ବଲପୁର ନିକଟସ୍ଥ ରାମେଶ୍ୱର ତୀର୍ଥ, ପଦ୍ମପୁର ନିକଟସ୍ଥ ଚନ୍ଦୀଦହଗଡ଼ର ପ୍ରସିଦ୍ଧ ଶିବ ମନ୍ଦିର, ଅଷ୍ଟଶମ୍ଭୁଙ୍କ ମଧ୍ୟରେ ହୁମାର ବିମଳେଶ୍ୱର, ମାନେଶ୍ୱର, ଗାଇସମାର ବରାଡ଼ ବାଲୁଙ୍କେଶ୍ୱର, ସୋର୍ଣ୍ଣାର ସ୍ୱପ୍ନେଶ୍ୱର, ଅମ୍ବାଭୋନାର କେଦାରନାଥ, ନୀଳଜୀ, ସରଣ୍ଡା ଓ ଦେଓଗାଁର ବୈଦ୍ୟନାଥଙ୍କ ନାମ ସର୍ବଦା ଉଲ୍ଲେଖନୀୟ ଅଟେ ।

## ଧର୍ମଭିତ୍ତି :

ଶିବପୁରାଣର ଗୌରୀଶଙ୍କର ବିବାହ ଉପାଖ୍ୟାନ ଉପରେ ସମ୍ବଲପୁରର ଶୀତଳଷଷ୍ଠୀ ପର୍ବ ଆଧାରିତ । ତାରକାସୁରର ଅତ୍ୟାଚାରରେ ଯେତେବେଳେ ସ୍ୱର୍ଗ-ମର୍ତ୍ତ୍ୟ, ପାତାଳ ଥରହର ହେବାକୁ ଲାଗିଲା, ସେତେବେଳେ ଦେବତାମାନେ ତା'ର ହାତରୁ ଏହି ସୃଷ୍ଟିକୁ ରକ୍ଷା କରିବା ପାଇଁ ବିଷ୍ଣୁଙ୍କ ଶରଣାଗତ ହେଲେ । କିନ୍ତୁ ବିଷ୍ଣୁ ସେ ନିରୁପାୟ । କଠୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ସାରି ତାରକାସୁର ବର ପାଇଥିଲା ଯେ, କେବଳ ଶିବଙ୍କ ପୁତ୍ର ହସ୍ତରେ ତା'ର ମୃତ୍ୟୁ ସମ୍ଭବ ହେବ । ଶିବ ହେଲେ ଆଜନ୍ମ ବ୍ରହ୍ମଚାରୀ । ସେତେବେଳେ ଶିବ ଘୋର ତପସ୍ୟାରେ ମଗ୍ନ ଥାନ୍ତି । ବିଷ୍ଣୁଙ୍କ ପରାମର୍ଶ ପାଇ ଦେବଗଣ ମହାଶକ୍ତିଙ୍କୁ ଅବତାର ଗ୍ରହଣ କରିବା ପାଇଁ ପ୍ରାର୍ଥନା କଲେ । ସେଇଠୁ ମହାଶକ୍ତି ହିମାଳୟର କନ୍ୟା ରୂପେ ଅବତାର ଗ୍ରହଣ କଲେ । ତାଙ୍କର ନାମ ହେଲା ପାର୍ବତୀ । ଦେବର୍ଷି ନାରଦଙ୍କ ପରାମର୍ଶରେ ଶିବଙ୍କୁ ପତିରୂପେ ପାଇବା ପାଇଁ ପାର୍ବତୀ କଠୋର ତପସ୍ୟା କଲେ । ଯୁଗ ପରେ ଯୁଗ ବିତିଗଲା ତଥାପି ଶିବଙ୍କର ଧ୍ୟାନଭଙ୍ଗ ହେଲା ନାହିଁ । ଏଣେ ପାର୍ବତୀ ଅନ୍ନ ଭକ୍ଷଣ ଏପରିକି ପତ୍ର ଭକ୍ଷଣ ମଧ୍ୟ ତ୍ୟାଗ କରି ଅପର୍ଣ୍ଣା ରୂପେ ନିରାହାରରେ କଠୋର ତପସ୍ୟା କରୁଥିଲେ ।

ଦେବଗଣ କିଂକର୍ତ୍ତବ୍ୟବିମୂଢ଼ ହୋଇ ପୁଣି ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ବିଷ୍ଣୁଙ୍କ ଆଦେଶ ପାଇ କାମଦେବ ମହାଦେବଙ୍କ ଉଦ୍ଦେଶ୍ୟରେ କାମବାଣ ନିକ୍ଷେପ କଲେ । ଶିବଙ୍କ ଧ୍ୟାନ ଭଙ୍ଗ ହେଲା । ଶିବଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ କାମାନଳ ସଞ୍ଚାରିତ ହେଲା । କ୍ରୋଧରେ ପ୍ରଭୁଙ୍କର ତୃତୀୟ ନେତ୍ରରୁ କ୍ରୋଧାନଳ ନିର୍ଗତ ହେବାରୁ କାମଦେବ ଭସ୍ମୀଭୂତ ହେଲେ । ସେହି ଦିନଠାରୁ କାମଦେବ ଅନଙ୍ଗ ରୂପେ ରହିଲେ । ଯାହାହେଉ ପାର୍ବତୀଙ୍କ ତପସ୍ୟା ସମ୍ପୂର୍ଣ୍ଣ ହେଲା ।

ପାର୍ବତୀଙ୍କୁ ପତ୍ନୀରୂପେ ଗ୍ରହଣ କରିବା ପୂର୍ବରୁ ଶିବ ପାର୍ବତୀଙ୍କୁ ପରୀକ୍ଷା କରିବାକୁ ମନସ୍ଥ କଲେ । ତେଜସ୍ୱିନୀ ଉମାଙ୍କୁ ତପସ୍ୟାରୁ ନିବୃତ୍ତ କରିବା ପାଇଁ ବଟୁରୂପଧାରୀ ଶିବ ହିମାଳୟକୁ ଯାଇ ପାର୍ବତୀଙ୍କୁ କହିଲେ- ମୁଁ ସେହି ମହେଶ୍ୱରଙ୍କୁ ଜାଣେ, ସମସ୍ତ ପ୍ରକାର ଅଶୁଭ କାର୍ଯ୍ୟରେ ତାଙ୍କର ରୁଚି । ହେ ଗୌରୀ, ଏକେତ ତୁମେ ଯୁବତୀ ପୁଣି ଅନିନ୍ଦ୍ୟ ସୁନ୍ଦରୀ । ଶିବତ ଶ୍ମଶାନବାସୀ ବୃଦ୍ଧ ପୁଣି ଦିଗମ୍ବର । ସର୍ପବେଷ୍ଟନଯୁକ୍ତ ଶିବଙ୍କର କରକୁ ତୁମେ କିପରି ସହ୍ୟ କରିପାରିବ !? ନବବଧୂର ଦୁକୂଳ ବସନ ସହିତ ରକ୍ତଲିପ୍ତ ଗଜାଜିନ (ହସ୍ତୀ ଚର୍ମ)ର ସଂଯୋଗ ହୋଇପାରେ କି ? ଶିବ ବିରୂପ, ତାଙ୍କର ବଂଶ (କୁଳ-ଗୋତ୍ର) ଅଜ୍ଞାତ, ତାଙ୍କର ଉଲଗ୍ନତାରୁ ତାଙ୍କର ସମ୍ପଦ ଜଣାପଡୁଛି । ବର ହେବା ପାଇଁ ଶିବଙ୍କର ଗୁଣ ବା ଯୋଗ୍ୟତା ତିଳେମାତ୍ର ନାହିଁ । ଶିବ ହେଉଛନ୍ତି ଏକ ଶ୍ମଶାନ-ଶୂଳ । ଯୂପ ଦ୍ୱାରା ଅନୁଷ୍ଠାନ ଯୋଗ୍ୟ ବୈଦିକ ସତ୍କ୍ରିୟା କଦାପି ଶ୍ମଶାନ-ଶୂଳ ଦ୍ୱାରା ଅନୁଷ୍ଠିତ ହୋଇ ନ ପାରେ । ତାହାଙ୍କୁ ପତିରୂପେ ବରଣ କରି କି ସୁଖ ପାଇବ ।?

ବଟୁ ରୂପଧାରୀ ମହାଦେବଙ୍କ ଉପଦେଶ ଶୁଣି ପାର୍ବତୀ କ୍ରୋଧରେ ଉତ୍ତେଜିତ ହୋଇଗଲେ । ବ୍ରାହ୍ମଣଙ୍କୁ ତିରସ୍କାର କରି ପାର୍ବତୀ କହିଲେ, ହେ-ବ୍ରାହ୍ମଣଶ୍ରେଷ୍ଠ, ତୁମେ ଏତେ ଶାସ୍ତ୍ରାଧ୍ୟୟନ କରି ମଧ୍ୟ ଶିବଙ୍କ ମହିମା ପ୍ରତି ଅଗୋଚର । ତୁମେ କେତେ ମୂର୍ଖ ! ମୁଁ ଶିବଙ୍କର ବୈଭବ ବା ରୂପ ପ୍ରତି ଆଦୌ ଆକୃଷ୍ଟ ନୁହେଁ । ମୁଁ ତାଙ୍କର ଜ୍ଞାନ, ତାଙ୍କର ମହିମାର ପୂଜାରିଣୀ । ମୁଁ ତାଙ୍କୁ ପତି ରୂପେ ବରଣ କରିଛି, ତାଙ୍କ ଭିନ୍ନ ଅନ୍ୟ କାହାର ପାଣିଗ୍ରହଣ କରିବି ନାହିଁ । ସେ ଯଦି ମୋତେ ତାଙ୍କର ଅଯୋଗ୍ୟ ମଣିବେ, ତେବେ ମୁଁ ଆହୁରି କଠୋର ତପସ୍ୟା କରି ଇହଲୀଳା ସମ୍ବରଣ କରିବି ।

ପାର୍ବତୀଙ୍କ ଦୃଢ଼ୋକ୍ତିରେ ସନ୍ତୁଷ୍ଟ ହୋଇ ଶିବ ନିଜର ଦିବ୍ୟରୂପ ଧାରଣ କଲେ । ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ମାହେନ୍ଦ୍ର ଲଗ୍ନରେ ହରପାର୍ବତୀଙ୍କ ବିବାହ ସମ୍ପନ୍ନ ହେଲା । ଏହି ବିବାହ ଫଳରେ ଶିବ ଓ ଶକ୍ତିଙ୍କ ମହାମିଳନ ଘଟିଲା । ଶିବପାର୍ବତୀଙ୍କ ଦିବ୍ୟ ଜ୍ୟୋତିରୁ କାର୍ତ୍ତିକେୟ ଜନ୍ମଗ୍ରହଣ କଲେ । ଯଥା ସମୟରେ କାର୍ତ୍ତିକେୟ ତାରକାସୁରକୁ ବଧକରି ଆସୁରିକ ଅତ୍ୟାଚାର ଉତ୍ପୀଡ଼ନ ଏବଂ ଶୋଷଣରୁ ଶାନ୍ତିକାମୀ ପୃଥିବୀବାସୀଙ୍କୁ ମୁକ୍ତି ଦେଲେ । ଏହାଦ୍ୱାରା ସମସ୍ତ ଅଶୁଭ ତଥା ଦୌର୍ବଲ୍ୟ ଅପସରି ଗଲା । ସେହି ଦିନଠାରୁ ଗଣଦେବ ରୂପେ ଶିବ ଜନମାନସରେ ପୂଜିତ ହୋଇ ଆସୁଛନ୍ତି । ପୁରାଣ ଯୁଗର ସେହି ଘଟଣାର ସ୍ମାରକୀରୂପେ ସମ୍ବଲପୁରରେ ଆବହମାନ କାଳରୁ ଶୀତଳଷଷ୍ଠୀ ଉତ୍ସବ ପାଳିତ ହୋଇ ଆସୁଛି । ଏକଦା ସମ୍ବଲପୁର ଶୈବକ୍ଷେତ୍ର ରୂପେ ଖ୍ୟାତିଲାଭ କରିଥିଲା । ପୁନଶ୍ଚ ଇତିହାସର ଏକ ଗୌରବମୟ ଅଧ୍ୟାୟରେ ଏହି ଭୂଖଣ୍ଡ ଶକ୍ତିପୀଠ ରୂପେ ପ୍ରସିଦ୍ଧିପ୍ରାପ୍ତ ଥିଲା । ଏହି ଦୃଷ୍ଟିକୋଣରୁ ଶିବ ଓ ଶକ୍ତିଙ୍କର ମହାମିଳନପୀଠ ସମ୍ବଲପୁରରେ ଶୀତଳଷଷ୍ଠୀ ପର୍ବପାଳନ ସର୍ବଦା ତାତ୍ପର୍ଯ୍ୟପୂର୍ଣ୍ଣ ।

## ଇତିହାସ :

ସ୍ଥାନୀୟ ଲୋକଙ୍କ ମୁଖରେ ପ୍ରଚଳିତ ଏକ ଐତିହାସିକ କିମ୍ବଦନ୍ତୀକୁ ଭିତ୍ତିକରି ସମ୍ବଲପୁରର ଶୀତଳଷଷ୍ଠୀ ପର୍ବର ଐତିହାସିକ ଭିତ୍ତିକୁ ଖୋଜା ଯାଇପାରେ । ଏହି ଦୃଷ୍ଟିକୋଣରୁ ଏହି ପର୍ବ ପ୍ରାୟ ତିନିଶହ ବର୍ଷହେଲା ମହାସମାରୋହରେ ପାଳିତ ହୋଇଆସୁଛି । ଚୌହାଣ ବଂଶର ପ୍ରତାପଶାଳୀ ରାଜା ଅଜିତ ସିଂହ (୧୬୯୫–୧୭୬୬) ରାଜା ଛତ୍ର ସାଏଙ୍କ ପୁତ୍ର ଥିଲେ । ଦୀର୍ଘ ୭୨ ବର୍ଷକାଳ ସେ ସମ୍ବଲପୁର ଗାଦୀର –ଆସୀନ ଥିଲେ । ଦେଖିବାକୁ ଗଲେ ସମ୍ବଲପୁରର ଚୌହାଣ ରାଜବଂଶରେ ଦୀର୍ଘତମ କାଳଧରି ସେ ହିଁ ଶାସନ୍ କରିଥିଲେ । ତାଙ୍କର ମନ୍ତ୍ରୀମାନେ ଏବଂ ଦେବାନ ଦକ୍ଷିଣରାୟ ରାଜ୍ୟର ଶାସନଭାର ଅତି ଦକ୍ଷ ଭାବରେ ପରିଚାଳନା କରୁଥିଲେ । ଅଜିତ ସିଂହଙ୍କ ଦୀର୍ଘ ରାଜତ୍ୱ କାଳରେ ସମ୍ବଲପୁରରେ ଅଖଣ୍ଡ ଶାନ୍ତି, ଶୃଙ୍ଖଳା ଓ ଉନ୍ନତି ବିରାଜିତ ଥିଲା । ଏହାର ମୁଖ୍ୟ କାରଣ ଥିଲା ଅଜିତଙ୍କ ଧର୍ମନୀତି ।

ଅଜିତ ସିଂହ କେବଳ ପରାକ୍ରମୀ ଓ ବିଚକ୍ଷଣ ଶାସକ ଥିଲେ ତାହା ନୁହେଁ, ଜଣେ ଧାର୍ମିକ ଓ ଗୁଣି ବ୍ୟକ୍ତି ମଧ୍ୟ ଥିଲେ । ସେ ଜଣେ ବ୍ରାହ୍ମଣ ବୈଷ୍ଣବ ଭକ୍ତ ଥିବାରୁ ବର୍ଷର ଅନେକାଂଶ ପୁରୁଷୋତ୍ତମପୁର (ପୁରୀ)ରେ କଟାଉ ଥିଲେ । ପୁରୀ ଏକ ବୈଷ୍ଣବ କ୍ଷେତ୍ର ରୂପେ ଖ୍ୟାତି ଅର୍ଜନ କରିଥିଲା । ତେଣୁ ତାଙ୍କ ରାଜ୍ୟ ସମ୍ବଲପୁରକୁ ମଧ୍ୟ ଏକ ବିଶେଷ ତୀର୍ଥ କ୍ଷେତ୍ର ରୂପେ ପରିଚିତ କରାଇବା ପାଇଁ ସେ ମନସ୍ଥ କଲେ । ପୁରୀ ଅଞ୍ଚଳରୁ ନୈଷ୍ଠିକ ବ୍ରାହ୍ମଣ ଆଣି "ଅଜିତପୁର ଶାସନ" (ଆଧୁନିକ ଶାସନ) ପ୍ରତିଷ୍ଠା କରିଥିଲେ । ତାଙ୍କ ସମୟରେ ଧର୍ମଶାସ୍ତ୍ର ଓ ସଂସ୍କୃତ ବିଦ୍ୟାର ଆଲୋଚନା ବିଶେଷ ଭାବରେ ହେଉଥିଲା । ସମ୍ବଲପୁର ଏକ ଆଦିବାସୀ ଓ ଅବ୍ରାହ୍ମଣ ବହୁଳ ଅଞ୍ଚଳ ଥିବାରୁ ବ୍ରାହ୍ମଣ ଧର୍ମ ପ୍ରତି ଅଜିତ ସିଂହଙ୍କୁ ଆକୃଷ୍ଟ ହେବାର ଦେଖି ସାଧାରଣ ଜନତାଙ୍କ ମଧ୍ୟରେ ଅସନ୍ତୋଷ ଦେଖାଦେଲା ।

ଅଜିତ ସିଂହ ଜାଣିଥିଲେ ଯେ, ଇତିହାସର ଏକ ଗୌରବମୟ ଅଧ୍ୟାୟରେ ଏହି ଅଞ୍ଚଳ ଏକ ବିଶିଷ୍ଟ ଶକ୍ତିପୀଠ ରୂପେ ପ୍ରସିଦ୍ଧ ଥିଲା । ସେ ଏହା ମଧ୍ୟ ଜାଣି ଥିଲେ ଯେ, ସମ୍ବଲପୁର ଅଞ୍ଚଳର କେବଳ ଶିବ ମନ୍ଦିର ନୁହେଁ, ସମଲେଶ୍ୱରୀ ପରି ଦେବୀ ମନ୍ଦିରମାନଙ୍କରେ ମଧ୍ୟ ଅବ୍ରାହ୍ମଣ ପୂଜକମାନେ ଅଛନ୍ତି । ଏସବୁକୁ ଦୃଷ୍ଟିରେ ରଖି ସମାଜର ସବୁ ଶ୍ରେଣୀର ଲୋକଙ୍କୁ ଜାତିର ମୁଖ୍ୟ ଧାରାରେ ସାମିଲ ପାଇଁ ସମ୍ବଲପୁରକୁ ଶିବ ଓ ଶକ୍ତିଙ୍କ ମହାମୀଳନ ପୀଠ ରୂପେ ଗଠନ କରିବା ପାଇଁ ଚେଷ୍ଟା କଲେ । ପରବର୍ତ୍ତୀ କାଳରେ ସମ୍ବଲପୁର ଏକ ବିଶିଷ୍ଟ ଶୈବ କ୍ଷେତ୍ର ଭାବେ ରୂପେ ବହୁ ଖ୍ୟାତି ଅର୍ଜନ କରିଥିଲା ।

ଦେବାନ୍ ଦକ୍ଷିଣ ରାୟଙ୍କୁ ପରାମର୍ଶ ଦେଇ ଧର୍ମ ଓ ରାଜ ସମ୍ପତ୍ତୀୟ ଅର୍ଥଦଣ୍ଡ ବିନିଯୋଗ କରି ସେ ଅଷ୍ଟଶମ୍ଭୁଙ୍କର ଅଷ୍ଟ ଓ ଆୟତନ ନିର୍ମାଣ କରିଥିଲେ । ଏଥି ମଧ୍ୟରୁ ହୁମାର ବିମଳେଶ୍ୱର ମନ୍ଦିର ରାଜା ବଳିୟାର ସିଂହଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ଅବଶିଷ୍ଟ ସାତୋଟି ମନ୍ଦିର ଅଜିତ ସିଂହ ସମୟରେ ନିର୍ମିତ ହୋଇଥିଲା । ଏଠାରେ ମାଳି ଜାତିର ଅବ୍ରାହ୍ମଣ ପୂଜକମାନେ ନିଯୁକ୍ତି ପାଇଥିଲେ । ସମ୍ବଲପୁରର ଆଦିବାସୀ ଓ ଅବ୍ରାହ୍ମଣମାନଙ୍କୁ ରାଜା ଅଜିତ ସିଂହଙ୍କ ଧର୍ମନୀତି ବିଶେଷ ଭାବେ ପ୍ରଭାବିତ କରିଥିଲା, ସେଥିପାଇଁ ବୋଧହୁଏ ଅଜିତ ସିଂହ ଶାସନକାଳ ତଥା ରାଜ୍ୟରେ ଶାନ୍ତି ଶୃଙ୍ଖଳା ଓ ଉନ୍ନତି ସମ୍ଭବପର ହୋଇଥିଲା ।

ଜଗନ୍ନାଥ ଧାମର ପ୍ରସିଦ୍ଧ ରଥଯାତ୍ରା ପର୍ବକୁ ଅନୁକରଣରେ ବହୁ ହରପାର୍ବତୀଙ୍କ ବିବାହ ଉପରେ ଆଧାରିତ ଶୀତଳଷଷ୍ଠୀ ପର୍ବର ପ୍ରଚଳନ ଅଜିତ ସିଂହଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ପ୍ରତିବର୍ଷ ଜ୍ୟେଷ୍ଠ ଶୁକ୍ଳପକ୍ଷ ଷଷ୍ଠୀତିଥିରେ ମାହେନ୍ଦ୍ର ଲଗ୍ନରେ ହର–ଗୌରୀଙ୍କ ବିବାହ ପର୍ବ ଅନୁଷ୍ଠିତ ହେବାକୁ ଲାଗିଲା । ଶିବ ଓ ଶକ୍ତିଙ୍କ ମହାମୀଳନ ପୀଠ ସମ୍ବଲପୁରରେ ଏହି ଉତ୍ସବ ପାଳନ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ତାହା ସୌନ୍ଦର୍ଯ୍ୟ ବୋଧ ଓ ସାଂସ୍କୃତିକ ଚେତନାକୁ କଳୁଷିତ କରେ । ଆଉ କେତେଜଣ କହନ୍ତି ଏଥିରେ ଅଶୀଳତା କିଛି ନାହିଁ, ବରଂ ପରମ୍ପରାର ଏହା ଏକ ପରିପ୍ରକାଶ । ବିବାଦର ଅନ୍ତ ନାହିଁ । ପରମ୍ପରା ନାମରେ ବାଇନାଚ ପରିବେଷଣ ସାମାଜିକ ଜୀବନକୁ ଧାର୍ମିକ ବାତାବରଣରୁ ଦୂରେଇ ନେଉଛି । ଅନେକ ସମୟରେ 'ବାଇ'ହୀନ ରଥ ଟାଣିବାକୁ ଲୋକଙ୍କର ଅଭାବ ପରିଲକ୍ଷିତ ହୁଏ ଏବଂ ଶାନ୍ତି–ଶୃଙ୍ଖଳା ରକ୍ଷା ପାଇଁ ମୁତୟନ ହୋଇଥିବା ପୋଲିସ କର୍ମଚାରୀମାନେ ସମସ୍ତ ସମୟରେ ରଥ ଟାଣୁଥିବାର ଦେଖାଯାଏ ।

ସେ ଯାହାହେଉ ରାଜାଙ୍କ ରାଜତ୍ୱ ଯାଇଛି । ପର୍ବର ଭାର ଆସି ପଡ଼ିଛି ସାଧାରଣ ଜନତାଙ୍କ ସ୍କନ୍ଧରେ । କମିଟି ଗଠିତ ହୋଇଛି । ମାସେ ଦୁଇ ମାସ ଧରି ଅଖିଆ ଅପିଆ ଅନିଦ୍ରା ରହି କମିଟିର ସଦସ୍ୟଗଣ ଚାନ୍ଦା ମାଗିବା, ମୂର୍ତ୍ତି ତିଆରି କରିବା, ରାଜପରା କରିବା ତଥା କନ୍ୟାପକ୍ଷଙ୍କୁ ସାହାଯ୍ୟ, ଶୋଭାଯାତ୍ରା ପାଇଁ କୋ ନୃତ୍ୟ–ଗୀତର ଆୟୋଜନ ସାଙ୍ଗକୁ କଲିକତା ଆଦି ସ୍ଥାନରୁ ପାଇ ବାଇନାଚର ବ୍ୟବସ୍ଥା କରିବା ଆଦି ସମସ୍ତ କାମ କରନ୍ତି ।

କେବଳ ସେତିକି ନୁହେଁ ପର୍ବରେ ହେଉଥିବା ଜନସମାଗମକୁ ଦେଖି ନିରାପତ୍ତା, ଆଇନ, ଶୃଙ୍ଖଳା ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ସ୍ଥାନୀୟ ପୋଲିସ ଓ ପ୍ରଶାସକ ମଧ୍ୟ ମୁଣ୍ଡ ଖେଳାଇବାକୁ ବାଧ୍ୟ । କାରଣ ଏହି ଦିନକ ପାଇଁ ସମ୍ବଲପୁର ଏକ 'ଦେବ'ଭୂମିରେ ପରିଣତ ହୋଇଯାଏ ।

ନବକୃଷ୍ଣ ଚୌଧୁରୀ ଉନ୍ନୟନ
ଗବେଷଣା କେନ୍ଦ୍ର, ଓଡ଼ିଶା, ଭୁବନେଶ୍ୱର–୭୫୧୦୧୩ ।

# ଟୀକାକାର ଶ୍ରୀଧର ସ୍ୱାମୀ

* ଡକ୍ଟର ମନ୍ମଥ କୁମାର ପ୍ରଧାନ *

ସଂସ୍କୃତ ସାହିତ୍ୟରେ ପଣ୍ଡିତ ଶ୍ରୀଧର ସ୍ୱାମୀ ଟୀକାକାର ଭାବରେ ଜଣେ ପ୍ରତିଷ୍ଠିତ ପ୍ରତିଭା । ସେ ଏକାଧାରରେ ଜଣେ କବି, ଦାର୍ଶନିକ, ପଣ୍ଡିତ, ଭାଷ୍ୟକାର ତଥା ପରମଭକ୍ତ ଭାବରେ ଆଦୃତ । ସଂସ୍କୃତ ସାହିତ୍ୟକୁ ତାଙ୍କର ଅବଦାନ ଅନବଦ୍ୟ । ବାଲେଶ୍ୱର ରେମୁଣା ଥାନା ଅନ୍ତର୍ଗତ 'ମରେଇ' ଗାଁରେ ତାଙ୍କର ଜନ୍ମ । ରେମୁଣାର ପ୍ରସିଦ୍ଧ କ୍ଷୀରଚୋରା ଗୋପୀନାଥ ମନ୍ଦିରର ଉତ୍ତର ଦିଗରେ ଥିବା ଗ୍ରୁନ ନଣଠାରୁ ତିନିମାଇଲ ଦୂରରେ ଏହି ଗ୍ରାମ ଅବସ୍ଥିତ । ଶ୍ରୀଧର ସ୍ୱାମୀଙ୍କୁ କେତେକ ଆଲୋଚକ ମହାରାଷ୍ଟ୍ର, ଗୁଜୁରାଟ, ପଶ୍ଚିମବଙ୍ଗ, ଢେଙ୍କାନାଳବାସୀ ବୋଲି ମତ ଦିଅନ୍ତି । 'ପ୍ରବାସୀ' ପତ୍ରିକାର ସମ୍ପାଦକ ଶ୍ରୀ ଦିନେଶ ଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ଶ୍ରୀଧର ସ୍ୱାମୀଙ୍କର କୁଳ ପରିଚୟ ଓ କାଳନିର୍ଣ୍ଣୟ ପ୍ରବନ୍ଧ ୧୩୫୬ ମାଘ ସଂଖ୍ୟାରେ ସାତ୍ରାଡାଙ୍ଗାର ଘନ୍ନେଜଂସ୍ଥ ଘଟକ୍ ସର୍ବପ୍ରଥମ କୁଳପଞ୍ଜିରେ ଶ୍ରୀଧର ସ୍ୱାମୀଙ୍କ ନାମ ଆବିଷ୍କାର କରି ତଦ୍‌ରଚିତ– 'କୁଳତତ୍ତ୍ୱଦର୍ଶନ' ଗ୍ରନ୍ଥରେ (୧) ପ୍ରକାଶ କରିଛନ୍ତି ଯେ, ଶ୍ରୀମଦ୍‌ଭାଗବତ୍ ଓ ଗୀତାର ଟୀକାକାର ଶ୍ରୀଧର ସ୍ୱାମୀ ନାଦାଗ ବା ଦୁଭିର । ମାତ୍ର ଏ ମତର ଯଥାର୍ଥତା ନାହିଁ । ଜୟଦେବଙ୍କୁ ବଙ୍ଗାଳର ଅଧିବାସୀ ବୋଲି କହିବା, ବାଲେଶ୍ୱର ଜିଲ୍ଲାସ୍ଥ ଜଳେଶ୍ୱର ନିକଟବର୍ତ୍ତୀ ପୁଣ୍ଡୁଣିଆ ଗ୍ରାମରେ ଜନ୍ମ ହୋଇଥିବା ରୀତି ଯୁଗୀୟ କବି ଦୀନକୃଷ୍ଣ ଦାସ ପୁରୀର ଅଧିବାସୀ ବୋଲି କହି ଓଡ଼ିଆ ସାହିତ୍ୟରେ ଦୁଇଜଣ ଦୀନକୃଷ୍ଣ ବୋଲି ମନ୍ତବ୍ୟ ଦେବା ଭଳି ଶ୍ରୀଧର ସ୍ୱାମୀ ଯେ ରେମୁଣାର ମରେଇଗାଁର ଅଧିବାସୀ ଏହା ନିଃସନ୍ଦେହ । ଅବଶ୍ୟ ଢେଙ୍କାନାଳସ୍ଥ କପିଳାସରେ ବ୍ରହ୍ମେଶ୍ୱରୀ ମଠର କିଛି ଦୂରରେ ଭୁବନେଶ୍ୱର ମହାଦେବ ନିକଟରେ ତାଙ୍କର ବୃହତ ସମାଧି ଅଦ୍ୟାବଧି ପର୍ଯ୍ୟନ୍ତ ସୁରକ୍ଷିତ ଅଛି । ଢେଙ୍କାନାଳରେ ସେ ରହୁଥିଲେ ଓ ସେ ସ୍ଥାନଟି ତାଙ୍କ ସାଧନାର ପୀଠସ୍ଥଳୀ ଥିଲା । ସେଠାରେ ସେ ନୃସିଂହ ଆଶ୍ରମ ପ୍ରତିଷ୍ଠା କରିଥିଲେ ଓ ନିଜେ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ତାଙ୍କର ଜନ୍ମସ୍ଥାନ ମରେଇଗାଁକୁ ମୟୂରଗାଁ ତଥା ମଞ୍ଜାରୀଗାଁ ବୋଲି କେତେକ ଅପଭ୍ରଂଶ କରି ଉଲ୍ଲେଖ କରନ୍ତି ।

ଭାଣ୍ଡାରକାର ପ୍ରାଚ୍ୟ ଗବେଷଣା ପ୍ରତିଷ୍ଠାନର ଡିରେକ୍ଟର ପି: କେ: ଗୋଡ଼େ ଶ୍ରୀଧର ସ୍ୱାମୀଙ୍କ ଆବିର୍ଭାବ ୧୩୫୦–୧୪୫୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ଣ୍ଣୟ କରିଛନ୍ତି । ଏସ୍: କେ: ଦେ ଦର୍ଶାଇଛନ୍ତି ଯେ ଶ୍ରୀଧରସ୍ୱାମୀ ୧୩୦୦ ଖ୍ରୀଷ୍ଟାବ୍ଦର ଲୋକ

(୨) ଶ୍ରୀକୃଷ୍ଣ ଦାସ 'ଶ୍ୟାମାନନ୍ଦ ପ୍ରକାଶ' ବୈଷ୍ଣବ ଗ୍ରନ୍ଥରେ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ଓ ଟୀକାକାର ଶ୍ରୀଧର ସ୍ୱାମୀଙ୍କ ଜନ୍ମ ସ୍ଥାନ ମରେଇଗାଁ ବୋଲି ବର୍ଣ୍ଣନା କରିଛନ୍ତି ।

ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶା ଇତିହାସରେ ଶ୍ରୀଧର ସ୍ୱାମୀଙ୍କୁ ରେମୁଣାର ଅଧିବାସୀ ବୋଲି ମତ ଦେଇଛନ୍ତି । ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ତାଙ୍କର **Studies an *Orissan History Archeology and Archives*** ପୁସ୍ତକରେ ***A short note on Sridhara Swami*** ସମ୍ପର୍କରେ ଅନୁରୂପ ମତ ଦେଇଛନ୍ତି । ୧୯୨୦ ମସିହାରେ ବିଶିଷ୍ଟ ପ୍ରାବନ୍ଧିକ ଚନ୍ଦ୍ରମୋହନ ମହାରଣା ତତ୍କାଳୀନ ପ୍ରକାଶିତ 'ମୁକୁର' ପତ୍ରିକାରେ ଶ୍ରୀଧରସ୍ୱାମୀଙ୍କ ଜନ୍ମସ୍ଥାନ ରେମୁଣା ନିକଟସ୍ଥ ମରେଇ ଗାଁ ବୋଲି ଦର୍ଶାଇଛନ୍ତି । ସେ 'ଉତ୍କଳ ସାହିତ୍ୟ' ଷଷ୍ଠ ବର୍ଷ ଚତୁର୍ଥ ସଂଖ୍ୟା ସତସ୍ତରୀ ପୃଷ୍ଠାରେ ଶ୍ରୀଧର ସ୍ୱାମୀଙ୍କ ସମ୍ପର୍କରେ ଆଲୋକପାତ କରିଛନ୍ତି । ହିନ୍ଦୀ ପୁସ୍ତକ 'ଉତ୍କଳ ରତ୍ନ ସଂଗ୍ରହରେ ଶ୍ରୀଧର ସ୍ୱାମୀଙ୍କ ଜନ୍ମସ୍ଥାନ ରେମୁଣାର ମରେଇଗାଁ ବୋଲି ପ୍ରମାଣ ମିଳେ । ଏ ସମ୍ପର୍କରେ 'ଝଙ୍କାର' ପତ୍ରିକା ୩୩ଶ ବର୍ଷ ୧୯୮୧ ମସିହା ଶାରଦୀୟ ସଂଖ୍ୟାରେ କିଛି ସୂଚନା ରହିଛି । ଗୋଲକଚନ୍ଦ୍ର ମହାପାତ୍ରଙ୍କ 'ଯୁଗେ ଯୁଗେ ବାଲେଶ୍ୱର' ପୁସ୍ତକର ସତେଇଶ ପୃଷ୍ଠାରେ ଲେଖକ ଦର୍ଶାଇଛନ୍ତି ଯେ ଭାରତ ବିଖ୍ୟାତ ପଣ୍ଡିତ ପ୍ରବର ଶ୍ରୀଧର ସ୍ୱାମୀ ରେମୁଣାର ଉତ୍ତରକୁ ପାଞ୍ଚ ମାଇଲ ଦୂରରେ ମଞ୍ଜାରୀ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ରେମୁଣାର ଲବ୍ଧିତ କବି ଲକ୍ଷ୍ମୀନାରାୟଣ ମହାରଣା ତାଙ୍କର 'କ୍ଷୀରଚୋରା ରସିକ ବିନୋଦ' କାବ୍ୟରେ ପଣ୍ଡିତ ଶ୍ରୀଧର ସ୍ୱାମୀ ରେମୁଣାର ଅଧିବାସୀ ବୋଲି ବର୍ଣ୍ଣନା କରିଛନ୍ତି । ଡକ୍ଟର ବିଦ୍ୟାନନ୍ଦ କର 'କୋଣାର୍କ' ପତ୍ରିକାର ୧୯୮୭ ମସିହା ୬୫ ସଂଖ୍ୟାରେ ଶ୍ରୀଧର ସ୍ୱାମୀଙ୍କୁ ଓଡ଼ିଶାର ଅଧିବାସୀ ବୋଲି କହି ତାଙ୍କର ଅଦ୍ୱୈତ ମତବାଦ ଉପରେ ବିଶ୍ଳେଷଣ କରିଛନ୍ତି । ଶ୍ରୀମତୀ ପ୍ରତିଭା କୁମାରୀ ଦେବୀଙ୍କ ଦ୍ୱାରା ପ୍ରକାଶିତ କଟକର ବାଲୁବଜାରସ୍ଥ ଦାଶରଥି ପୁସ୍ତକାଳୟରୁ ମୁଦ୍ରିତ 'ଗଲୁଶେଦ କପିଳାସ ଓ ଶ୍ରୀଧର ସ୍ୱାମୀ' ପୁସ୍ତକଟିରେ ଏ ସମ୍ପର୍କରେ ବେଶ୍ କିଛି ସୂଚନା ମିଳେ । ଦୈନିକ 'ସମାଜ'ର ୧୯୭୭ ମସିହା ନଭେମ୍ବର ଏକୋଇଶ ତାରିଖ ସଂଖ୍ୟାରେ ଶରତଚନ୍ଦ୍ର ମହାରଣା ଶ୍ରୀଧର ସ୍ୱାମୀଙ୍କ ଉପରେ ସମ୍ୟକ ସୂଚନା ଦେଇଛନ୍ତି । ଶ୍ରୀକୃଷ୍ଣ ଦାସଙ୍କ 'ଶ୍ରୀଶ୍ୟାମାନନ୍ଦ ପ୍ରକାଶ' ଓ ଲାଲଦାସ ବାବାଜୀଙ୍କର 'ଶ୍ରୀଶ୍ରୀଭକ୍ତିମାଳା ଗ୍ରନ୍ଥରୁ

ଶ୍ରୀଧର ସ୍ୱାମୀଙ୍କ ସମ୍ପର୍କରେ କିଛି ତଥ୍ୟ ମିଳେ । ଗବେଷକ **Dr. J. N. Farquhar "An outline of the religious literature of India"** ନାମକ ପୁସ୍ତକରେ ଶ୍ରୀଧର ସ୍ୱାମୀଙ୍କୁ ଖ୍ରୀ: ପୂ: ୧୪୦୦ ବୋଲି ମତ ଦେଇଛନ୍ତି । ରୂପ ଗୋସ୍ୱାମୀ ମଧ୍ୟ 'ସୁକ୍ତିସଂଗ୍ରହ' ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ସୁକ୍ତିକୁ ଉଦ୍ଧାର କରିଛନ୍ତି । ବିଷ୍ଣୁପୁରୀ 'ଭାଗବତ ଭକ୍ତି ରତ୍ନାବଳୀ' ଗ୍ରନ୍ଥରେ ଶ୍ରୀଧର ସ୍ୱାମୀଙ୍କ ଟୀକା ସମୂହକୁ ପ୍ରଶଂସା କରିଛନ୍ତି । ବେଲୁଡ଼ର ଶ୍ରୀରାମକୃଷ୍ଣ ମିଶନର ସ୍ୱାମୀ ଶ୍ରୀଜଗଦୀ ଶ୍ୱରାନନ୍ଦଙ୍କ ଅନୁଦିତ ଶ୍ରୀମଦ୍ ଭାଗବତ ଗୀତାର ନିବେଦନରେ ଶ୍ରୀଧର ସ୍ୱାମୀଙ୍କ ଭୂୟସୀ ପ୍ରଶଂସା ଦେଖିବାକୁ ମିଳେ, "ଗୀତାର ବହୁ ଭାଷ୍ୟ ଟୀକା ଅଧ୍ୟୟନାନ୍ତେ ନିଃସଂଶୟରେ ବୁଝିଛି ଯେ, ଶ୍ରୀଧର ସ୍ୱାମୀକୃତ 'ସୁବୋଧିନୀ' ଟୀକା ହିଁ ସର୍ବାପେକ୍ଷା ସଂକ୍ଷିପ୍ତ ସରଳ ଓ ସାରଗର୍ଭକ ଏବଂ ପାଠକମାନଙ୍କ ପାଇଁ ବିଶେଷ ଉପଯୋଗୀ" । 'ବଙ୍ଗଳା ବିଶ୍ୱକୋଷ'ରେ ଶ୍ରୀଧର ସ୍ୱାମୀଙ୍କ ସମ୍ପର୍କରେ ଗୋଟିଏ ଅନୁଚ୍ଛେଦ ଅଛି, ତହିଁରେ ତାଙ୍କ ଗୁରୁଙ୍କ ନାମ 'ପରମାନନ୍ଦ' ବୋଲି ଉଲ୍ଲେଖ ଅଛି । (୩) ତାଙ୍କର ବହୁତ କୃତି କାଳଗର୍ଭରେ ବିଲୀନ । ତାଙ୍କର 'ବ୍ରଜବିହାର' କାବ୍ୟ ଜନାଦୃତ । ମହିମାଧର୍ମ ଆଧାରିତ ତାଙ୍କ ପୁସ୍ତକ 'ଶିବ ଚନ୍ଦ୍ରିକା' ଏକ ସାର୍ଥକ ସୃଷ୍ଟି । ସେ 'ଶ୍ରୀ-ପଦ୍ୟାବଳୀ'ର ରଚୟିତା ଭାବରେ ଖ୍ୟାତ ହୋଇଛନ୍ତି । ଜଣେ ଟୀକାକାର ଭାବରେ ତାଙ୍କର ପ୍ରତିଭା ଅନସ୍ୱୀକାର୍ଯ୍ୟ । ବ୍ୟାସଦେବଙ୍କ ସଂସ୍କୃତ ଶ୍ରୀମଦ୍‌ଭାଗବତ ଅଠର ହଜାର ଶ୍ଳୋକରେ ରଚିତ । ଏହାକୁ ସହଜ, ସରଳ ତଥା ବୋଧଗମ୍ୟ କରିବା ପାଇଁ ସେ ଚବିଶ ହଜାର ଶ୍ଳୋକର ଟୀକା କରିଛନ୍ତି । ଏହାର ପ୍ରଭାବରେ ଭକ୍ତକବି ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିବାରେ ସକ୍ଷମ ହୋଇଥିଲେ । ତେଣୁ ଜଗନ୍ନାଥ ଦାସ ଓଡ଼ିଆ ଭାଗବତର ଦ୍ୱାଦଶ ସ୍କନ୍ଧରେ ଲେଖିଛନ୍ତି,-"

ଶ୍ରୀଧରନାମେ ବିପ୍ରବର, କଳିଯୁଗରେ ଜନ୍ମ ତା'ର ।
ଶ୍ରୀମଦ୍‌ଭାଗବତ ଯେ ପୁରାଣ, ଅଷ୍ଟାଦଶ ସହସ୍ର ଶ୍ଳୋକେଣ ।
ତା'ଟୀକା ଚଉବିଂଶ ସହସ୍ର, କରଇ ଶ୍ରୀଧର ପ୍ରକାଶ ।
ବିପ୍ର କୁଳରେ ଜନ୍ମହୋଇ, ଜଗନ୍ନାଥ ଯେ ନାମ ବହି ।
ପ୍ରାକୃତ ବନ୍ଧେ ଭାଗବତ, କହିଲେ ସନ୍ଥ ଜନହିତ ।

ଶ୍ରୀଧର ସ୍ୱାମୀଙ୍କ ଶ୍ରୀମଦ୍ ଭାଗବତ ଟୀକା (ସୁବୋଧିନୀ), ବିଷ୍ଣୁପୁରାଣ ଟୀକା (ଆତ୍ମପ୍ରକାଶ) ଗୀତାସାର ଟୀକା (ସୁବୋଧିନୀ), ଦେବସ୍ତୁତି ଟୀକା (ମହିମ୍ନ ଟୀକା), ଶ୍ରୀମଦ୍‌ଭାଗବତର ଟୀକା (ଭାବାର୍ଥ ଦୀପିକା), ସନତ୍ ସୁଜାତୀୟର ଟୀକା (ବାଳବୋଧିନୀ) ପଦାର୍ଥ ପ୍ରକାଶିକା (ପୁରାଣ ଟୀକା) ତାଙ୍କର ଏକ ଏକ ସଫଳସୃଷ୍ଟି ।(୪)

ଶ୍ରୀଚୈତନ୍ୟଦେବ ତାଙ୍କୁ ଗୁରୁ ରୂପରେ ସ୍ୱୀକାର କରିଛନ୍ତି । ଶ୍ରୀଚୈତନ୍ୟ ନିଜେ ଲେଖିଛନ୍ତି,-

"ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତଜାନି,
ଜଗତଗୁରୁ ଶ୍ରୀଧର ସ୍ୱାମୀ ଗୁରୁକରିମାନି ।
XX XX XX
ଶ୍ରୀଧରେର ଅନୁଗତ୍ୟେ ଯେ କରେ ଲିଖନ,
ସବଲୋକ ମାନ୍ୟକରି କରିବେ ଗ୍ରହଣ ।"

ପୁରୁଷୋତ୍ତମଦେବଙ୍କ ରାଜତ୍ୱ ସମୟରେ ଓଡ଼ିଶାକୁ ଚୈତନ୍ୟଦେବ ୧୫୧୦ ଖ୍ରୀ:ରେ ଆସିଥିଲେ । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ ପଞ୍ଚଦଶଶତାବ୍ଦୀର କବି । ତେଣୁ ଶ୍ରୀଧର ସ୍ୱାମୀଙ୍କୁ ଚତୁର୍ଦ୍ଦଶ ଶତାବ୍ଦୀର ବୋଲି ଗ୍ରହଣ କରାଯାଇପାରେ । ପ୍ରାଚୀନ ଅର୍ବାଚୀନ ଲେଖକମାନଙ୍କ ମଧ୍ୟରେ ଶ୍ରୀଭକ୍ତି ରତ୍ନାବଳୀ ଗ୍ରନ୍ଥକାର ଶ୍ରୀବିଷ୍ଣୁପୁରୀ, ଶ୍ରୀ ସନାତନଗୋସ୍ୱାମୀ, ଶ୍ରୀରୂପ ଗୋ ସ୍ୱାମୀ, ଶ୍ରୀ ଜୀବଗୋ ସ୍ୱାମୀ, ଶ୍ରୀ କୃଷ୍ଣ ଦାସ କବିରାଜ ଗୋସ୍ୱାମୀ, ବଳଦେବ ବିଦ୍ୟାଭୂଷଣ ପ୍ରମୁଖ ଶ୍ରୀଧର ସ୍ୱାମୀଙ୍କ ନାମ ଓ ଟୀକାର ଉଲ୍ଲେଖ କରି ତାଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ସମଗ୍ର ଭାରତବର୍ଷରେ ଅଗଣିତଲୋକଙ୍କ କଣ୍ଠରେ ଯେଉଁ ଶ୍ଳୋକ ଉଚ୍ଚାରିତ-

"ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।"

ତାହା ଶ୍ରୀଧର ସ୍ୱାମୀଙ୍କ କୃତ ଶ୍ଳୋକ-ଏହା ଭାଗବତକାରଙ୍କର ନୁହେଁ ।

ଶ୍ରୀମଦ୍‌ଭାଗବତର ପ୍ରଥମ ସ୍କନ୍ଧ ଆରମ୍ଭରେ ଶ୍ରୀଧର ସ୍ୱାମୀ ଲେଖିଛନ୍ତି,-"ଓଁ ନମୋ ଭାଗବତେ ପରମହଂସା ସ୍ୱାଦିତ ଚରଣକମଳ ଚିନ୍ମକରନ୍ଦାୟ ଭକ୍ତଜନ ମାନସ ନିବାସାୟ ଶ୍ରୀକୃଷ୍ଣାୟ ।

"ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟଚ ବକ୍ଷସି
ଯସ୍ୟାନ୍ତେ ହୃଦୟେ ସଂବିତ୍ ତଂ ନୃସିଂହ ମହଂଭଜେ ।"

ଏପରି ଜଣେ ଯୋଗଜନ୍ମା ମହାପୁରୁଷ, ଶିବଯୋଗୀ, ପଣ୍ଡିତ ଶ୍ରୀଧର ସ୍ୱାମୀଙ୍କ ଉପରେ ଯଥାଯଥ ଗବେଷଣା ହେଲେ ତାଙ୍କ ପ୍ରତିଭାର ପ୍ରକୃତ ମୂଲ୍ୟାୟନ ହୋଇପାରିବ । ଏବେ ସେମୁଣ୍ଡାରେ ସ୍ମୃତିପରିଷଦ ଗଠିତ ହୋଇ ତାଙ୍କର ଜନ୍ମବାର୍ଷିକୀ ପାଳନ କରାଯାଉଛି । ତେବେ ଶ୍ରୀଧର ସ୍ୱାମୀ ଭାରତର ଜଣେ ଖ୍ୟାତନାମା ଟୀକାକାର ଭାବରେ ପ୍ରାତଃ ସ୍ମରଣୀୟ ହୋଇ ରହିଛନ୍ତି ।

(୧) ଯେଶୋବନ୍ତରୁ ମେଳ୍ଚ ଜୋନରେ ପ୍ରକାଶିତ)

(୨) ଏସ୍. କେ. ଦେ-ବଙ୍ଗଳା ସାହିତ୍ୟର ଇତିହାସ-ପୃ-୧୭

(୩) (କ) ଶ୍ରୀମଦ୍ ଭାଗବତ ପୁରାଣର ଦଶମ ସ୍କନ୍ଧ ଭାବାର୍ଥ ଦୀପିକା ଟୀକା ଉପସଂହାରରେ ଅଛି,-

"ଦେବଂ ଶ୍ରୀପରମାନନ୍ଦ ସେବି ଶ୍ରୀଧର ନିର୍ମିତା
ଶ୍ରୀ ଭାଗବତ ଭାବାର୍ଥ ଦୀପିକା ଦଶମାଶ୍ରୟା ।"

(ଖ) ଆତ୍ମ ପ୍ରକାଶିକା ଟୀକାର ଅନ୍ତ-

"ଶ୍ରୀ ବିନ୍ଦୁ ମାଧବଂ ବନ୍ଦେ ପରମାନନ୍ଦ ବିଗ୍ରହଂ
ବାଚଂ ବିଶ୍ୱେଶ୍ୱରଂ ଗଙ୍ଗା ପରାଶର ମୁଖାନ୍ ମୁନିନ୍ ।"

(Bhandarkar research Institute poona MS No.-425 of oppert II 4714-CC II-169 page




ଭୁବନେଶ୍ୱରଠାରେ ସିଟଫ ତରଫରୁ ଆୟୋଜିତ ରାଜ୍ୟସ୍ତରୀୟ 'ନିଶା ଔଷଧ ସେବନ ଓ ମଦ୍ୟ ପାନ ନିଷେଧ' ଆଲୋଚନା ଚକ୍ରରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଉଦ୍‌ବୋଧନ ଦେଉଛନ୍ତି ।




ପୁରୀଠାରେ ଓଡ଼ିଶା କର୍ମଜୀବୀ ସାମ୍ବାଦିକ ସଂଘ ଆନୁକୂଲ୍ୟରେ ଆୟୋଜିତ ଏକ ଆଲୋଚନାଚକ୍ରରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ।




୪୦ତମ ବନ୍ୟଜନ୍ତୁ ସପ୍ତାହ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନନ୍ଦନକାନନଠାରେ ଏ
"ରୋପ ୱେ" ଉଦ୍‌ଘାଟନ କରୁଛନ୍ତି ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସମଲ ବାରେଜ୍ ଉଦ୍‌ଘାଟନ କରୁଛନ୍ତି । ଉକ୍ତ ଉଦ୍‌ଘାଟନୀ ଉତ୍ସବରେ
ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ଉପସ୍ଥିତ ଅଛନ୍ତି ।

ନବରଙ୍ଗପୁରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନକୁ ଉଦ୍‌ଘାଟନ କରୁଛନ୍ତି ।




ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପୁଲିଆ ନଦୀ ସେତୁର ଭିତ୍ତିପ୍ରସ୍ତର ସ୍ଥାପନ କରୁଛନ୍ତି ।



ଭୁବନେଶ୍ୱର ବିଭୂତି କାନୁନଗୋ କଳା ମହାବିଦ୍ୟାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିଖିଳ ଓଡ଼ିଶା
ଇତିହାସ କଂଗ୍ରେସର ୧୯ତମ ଅଧିବେଶନକୁ ଉଦ୍‌ଘାଟନ କରୁଛନ୍ତି ।



ରବୀନ୍ଦ୍ର ମଣ୍ଡପଠାରେ ପ୍ରାଚୀନ କଳାକେନ୍ଦ୍ର ଆନୁକୂଲ୍ୟରେ ଆୟୋଜିତ ସର୍ବଭାରତୀୟ ସଙ୍ଗୀତ ଓ ନୃତ୍ୟ ଉତ୍ସବକୁ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ଗାନ୍ଧୀନଗରର ଦୁର୍ଗାପୂଜା କମିଟି ଆନୁକୂଲ୍ୟରେ ଆୟୋଜିତ ରାବଣ ପୋଡ଼ି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ରାବଣର ପ୍ରତିମୂର୍ତ୍ତିରେ ଅଗ୍ନି ସଂଯୋଗ କରୁଛନ୍ତି ।



ଅନୁଗୁଳ ବାଡ଼ି ଗାରଡ଼ ଛାତ୍ରାବାସଠାରେ ଭାରତଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା, ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ମାଳତୀ ଚୌଧୁରୀଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି । ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବୈଷ୍ଣବ ପଟ୍ଟନାୟକ, ଶ୍ରୀ ବିଜୟ କୁମାର ପାଣି, ଶ୍ରୀ ଆନୁକାନନ ବେହେରା, ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ସୁଦର୍ଶନ ଜେନା ଉପସ୍ଥିତ ଅଛନ୍ତି ।



ଭାରତଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ଅବସରରେ ସମ୍ବଲପୁରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।




ଡାଲବେରଠାରେ ଭାରତଛାଡ଼ ଆନ୍ଦୋଳନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ଅବସରରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି ।




ଭୁବନେଶ୍ୱରଠାରେ ମହାତ୍ମାଗାନ୍ଧୀଙ୍କ ୧୨୫ତମ ଜୟନ୍ତୀ ପାଳନ ଅବସରରେ ସାମ୍ପ୍ରତିକ ପରିସ୍ଥିତିରେ ଗାନ୍ଧୀ ବିଚାରଧାରାର ପ୍ରାସଙ୍ଗିକତା ଉପରେ ଆୟୋଜିତ ଏକ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅଭିଭାଷଣ ଦେଉଛନ୍ତି ।



ବିଧାନସଭା ପରିସର ମଧ୍ୟରେ ଥିବା ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ପ୍ରତିମୂର୍ତ୍ତି ନିକଟରେ ବିଧାନସଭା ଶାସନ ସଚିବ ଶ୍ରୀ ଆର୍.ଏନ୍. ମିଶ୍ର ପୁଷ୍ପଗୁଚ୍ଛ ଅର୍ପଣ କରୁଛନ୍ତି ।



ନରେନ୍ଦ୍ରପୁର ନିକଟସ୍ଥ ଜୟପୁର–କଟିକଟା ଗୋଡ଼ 'ସେତୁ'ର ଭୂମିପୂଜା ଉତ୍ସବରେ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ଶ୍ରୀ ବିଜୟ କୁମାର ମହାପାତ୍ର ଓ ବିଧାନସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ।




ଭୁବନେଶ୍ୱର ନିକଟସ୍ଥ ଯଜ୍ଞେଶ୍ୱର ପାଠଶାଳାରେ ସ୍ନେହ ଆନୁକୂଲ୍ୟରେ ଆୟୋଜିତ ଆନ୍ତର୍ଜାତିକ ପ୍ରୌଢ଼ ଦିବସ ପାଳନ ଅବସରରେ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଓ ଶ୍ରୀ ନଳିନୀକାନ୍ତ ମହାନ୍ତି ।

# ଅର୍ଶ ରୋଗରୁ ମୁକ୍ତି ପାଇବେ କିପରି ?

ଡାକ୍ତର ଦୀନବନ୍ଧୁ ମହାରଣା

ସୁସ୍ଥ ଶରୀର ଗଠନ ପାଇଁ ମନୁଷ୍ୟର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ସେଗୁଡ଼ିକ ମଧ୍ୟରୁ ମଳାଶୟ ଓ ମଳଦ୍ୱାର ଏକ ପ୍ରଧାନ ଅଙ୍ଗ ଭାବରେ ପରିଗଣିତ । ଏହା ଶରୀରର ଅନାବଶ୍ୟକ ବାୟୁ ଓ ମଳକୁ ବାହାର କରିବା କାର୍ଯ୍ୟ ସମ୍ପାଦନ କରିଥାଏ । ମଳାଶୟରୁ ମଳଦ୍ୱାର ପର୍ଯ୍ୟନ୍ତ ଅଙ୍ଗକୁ ଆନୋରେକ୍ଟମ୍ କୁହାଯାଉଥିବା ବେଳେ ଶଲ୍ୟ ଚିକିତ୍ସା ବିଜ୍ଞାନରେ ମହର୍ଷି ସୁଶ୍ରୁତ ଏହାକୁ "ଗୁଦ" ବୋଲି କହିଛନ୍ତି । ଶରୀରର ଅନ୍ୟାନ୍ୟ ଅଙ୍ଗ ଭଳି ମଳାଶୟ ପ୍ରତି ବହୁ ବ୍ୟକ୍ତି ଯତ୍ନ ନେବାରେ ଅବହେଳା ପ୍ରଦର୍ଶନ କରିଥାନ୍ତି । କାରଣ ଏହି ଅଙ୍ଗ ଅନ୍ତର୍ବାସ ମଧ୍ୟରେ ରହି ମଇଳା ଅଂଶ ବାହାର କରିଥାଏ । ସାମାଜିକ ଚଳଣିରେ କେତେକ ବ୍ୟକ୍ତିଙ୍କର ଝାଡ଼ା ବସିବା ପୂର୍ବରୁ ଓ ପରେ ମଳଦ୍ୱାରରୁ ଟୋପା ଟୋପା କରି ରକ୍ତ ପଡ଼ିଥାଏ । କେତେକଙ୍କର ମଧ୍ୟ ଝାଡ଼ା ସହିତ ରକ୍ତ ପଡ଼ିବାର ଦେଖାଯାଇଥାଏ । ଏହାକୁ ଅର୍ଶ ବା ଆଧୁନିକ ଚିକିତ୍ସାରେ Piles or Haemorrhoids ବୋଲି କୁହାଯାଇଥାଏ ।

## ଅର୍ଶ ରୋଗ କ'ଣ ?

ଅର୍ଶ ଏକ ମଳାଶୟ ଓ ମଳଦ୍ୱାରଗତ ରୋଗ ଅଟେ । ଏହା ମଳଦ୍ୱାର ନିକଟସ୍ଥ ଶିରା (Haemorrhoidal Vein)ଗୁଡ଼ିକର ସମଷ୍ଟି । ଶିରାଗୁଡ଼ିକ ଫୁଲି ଫାଟି ଗଲେ ସେଥିରୁ ରକ୍ତ କ୍ଷରଣ ହୁଏ । ଯେଉଁ ଅର୍ଶରୁ ରକ୍ତ ବହେ ନାହିଁ, ଆମେ ତାକୁ ଲୁକ୍କାୟିତ ଅର୍ଶ (Blind Piles) କହୁ ଏବଂ ଯେଉଁଥିରୁ ରକ୍ତ ବାହାରେ ଆମେ ତାକୁ ରକ୍ତସ୍ରାବୀ ଅର୍ଶ (Bleeding Piles) କହିଥାଉଁ । ଅର୍ଶ ଜାମୁକୋଳି ରଙ୍ଗର ଛାତୁଟି ଭଳି ବର୍ଦ୍ଧିତ ହୋଇଥାଏ । ଏହାକୁ ଅର୍ଶର ବଳି କୁହାଯାଏ । ଯେଉଁ ଅର୍ଶର ବଳି ମଳଦ୍ୱାରରୁ ପଦାକୁ ବାହାରିଥାଏ, ତାକୁ ବହିଃଅର୍ଶ (External Piles) ଏବଂ ଯେଉଁ ଅର୍ଶ ବାହାରକୁ ଦେଖାଯାଏ ନାହିଁ ତାକୁ ଅନ୍ତଃଅର୍ଶ (Internal Piles) କୁହାଯାଏ । ଏହି ଅର୍ଶ ରୋଗ ଶରୀରର ବିଭିନ୍ନ ସ୍ଥାନରେ ସୃଷ୍ଟି ହୋଇ ବହୁବିଧ ଅର୍ଶ ରୋଗ ସୃଷ୍ଟି କରିଥାଏ ବୋଲି ମହର୍ଷି ସୁଶ୍ରୁତ ତାଙ୍କର ସଂହିତା ଗ୍ରନ୍ଥରେ ଉଲ୍ଲେଖ କରି ଯାଇଛନ୍ତି । ସୁଶ୍ରୁତଙ୍କ ମତରେ ନେତ୍ରାର୍ଶ, କର୍ଣ୍ଣାର୍ଶ, ମୁଖାର୍ଶ, ନାଭ୍ୟାର୍ଶ, ନାସାର୍ଶ, ଯୋନ୍ୟାର୍ଶ, ଶିଶ୍ନାର୍ଶ, ଚର୍ମକୀଳ ଓ ମଳଦ୍ୱାର ଅର୍ଶ ଅନ୍ୟତମ ।

## ଅର୍ଶ କାହିଁକି ହୁଏ ଓ ତା'ର କାରଣ କ'ଣ ?

ଅର୍ଶ ରୋଗ ହେବାର କାରଣ ମଧ୍ୟରେ ଦୀର୍ଘ ଦିନ ଧରି ମନୁଷ୍ୟର କୋଷ୍ଠ କାଠିନ୍ୟ ରହିବା, ଅଧିକ ମସଲା ଜାତୀୟ ଖାଦ୍ୟ ସେବନ କରିବା ଓ ଦୀର୍ଘ ସମୟ ଧରି କୋମଳ ଓ କଠିନ ଆସନରେ ବସି ରହିଲେ ଏହି ରୋଗ ସୃଷ୍ଟି ହୋଇଥାଏ । ମନୁଷ୍ୟ ଠିକ୍ ସମୟରେ ଆହାର ସେବନ ନକରି, ବିଶ୍ରାମ ନନେଇ ଶରୀରର ପ୍ରତିକୂଳ ଖାଦ୍ୟଦ୍ରବ୍ୟମାନ ସେବନ କରିବା ଦ୍ୱାରା ଏହି ରୋଗ ସୃଷ୍ଟି ହୋଇଥାଏ । କେତେକ ଉଗ୍ର, ଉତ୍କଟ ପାନୀୟ ଯଥା–ମଦ୍ୟ ଆଦି ଦ୍ରବ୍ୟ ସେବନ ଦ୍ୱାରା ମଧ୍ୟ ଏହି ରୋଗ ସୃଷ୍ଟି ହୋଇଥାଏ । ଏହା ବ୍ୟତୀତ ଦିବା ନିଦ୍ରା, ରାତି ଜାଗରଣ, ଅତ୍ୟଧିକ ମୈଥୁନ, ଭୋଜନ ପରେ ମୈଥୁନ ଓ ଅପ୍ରାକୃତିକ ରୂପରେ ମୈଥୁନ କର୍ମ କରିବା, ଆରାମରେ ବସି ପରିଶ୍ରମ ନକଲେ ଏହି ରୋଗ ସୃଷ୍ଟି ହୋଇଥାଏ ।

ଅର୍ଶ ରୋଗରେ ବାତ ଆଦି ଦୋଷ ପ୍ରକୁପିତ ଓ ଦୂଷିତ ହୋଇ ରକ୍ତ ବାହିନୀକୁ ଆଶ୍ରୟ କରି ଅଧିଷ୍ଠାନ ଅନୁସାରେ ଚର୍ମ, ମାଂସ ଏବଂ ମେଦକୁ ଦୂଷିତ କରି ମଳଦ୍ୱାର ସ୍ଥାନରେ ବିଭିନ୍ନ ଆକୃତିଯୁକ୍ତ ମାଂସାଙ୍କୁର ଉତ୍ପନ୍ନ କରନ୍ତି । ମନୁଷ୍ୟର ମଳଦ୍ୱାରର ଶିରା (Haemorrhoidal Veins) ସଞ୍ଚିତ ବଳିକୁ ଅର୍ଶ କହିବା ଯୁକ୍ତି ସାପେକ୍ଷ । ଏହି ସଞ୍ଚିତ ଶୋଥ ଯୋଗୁଁ ମଳଦ୍ୱାରର ଭିତରେ ଓ ବାହାରେ ଉଭୟରେ ବିଭିନ୍ନ ପ୍ରକାରର ବଳୀ ହୋଇଥାଏ । ମଳଦ୍ୱାରର ଶିରାଗୁଡ଼ିକ ଶିଥିଳ ତନ୍ତୁମାନଙ୍କ ଦ୍ୱାରା ହୋଇଥିବାରୁ ସର୍ବ ପ୍ରଥମେ ଏହା ଉପରେ ଚାପ ପଡ଼ିଥାଏ । ଏହି ଶିରାମାନଙ୍କୁ ଆଶ୍ରୟ ଦେବା ପାଇଁ ଏହାର ଚତୁଃପାର୍ଶ୍ୱରେ କୌଣସି କଠିନ ଧାତୁର ସଙ୍ଗଠନ ନାହିଁ । ତେଣୁ ଅର୍ଶ ସାଧାରଣତଃ ଚର୍ମ, ମାଂସ, ମେଦ ଓ ରକ୍ତ ଧାତୁକୁ ଦୂଷିତ କରି ଏ ସବୁ ଅଧିଷ୍ଠାନମାନଙ୍କ ଦ୍ୱାରା ଉତ୍ପନ୍ନ ହୋଇଥାଏ ।

## ଅର୍ଶ ରୋଗର ଲକ୍ଷଣ କ'ଣ ?

**(କ) କୋଷ୍ଠ କାଠିନ୍ୟ**–ପ୍ରତି ଦିନ ବା ସାମୟିକ ଭାବରେ ମଳ ପରିଷ୍କାର ନହେବା ଅର୍ଶ ରୋଗର ଏକ ପ୍ରଧାନ ଲକ୍ଷଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**(ଖ) ଯନ୍ତ୍ରଣା**–ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତିର ମଳତ୍ୟାଗ ସମୟରେ ବା ପୂର୍ବରୁ ଯନ୍ତ୍ରଣା ଅନୁଭବ ହୋଇଥାଏ । ଏହି କଷ୍ଟ

ଅନେକ ସମୟ ପର୍ଯ୍ୟନ୍ତ ରହିଥାଏ । ଠିଆ ହୋଇ ବସିଲେ କଣ୍ଟା ଫୁଟିଲା ଭଳି ରୋଗୀ ଅନୁଭବ କରିଥାଏ । ମଝିରେ ମଝିରେ ଧପ୍ ଧପ୍ ବେଦନା ଓ ଜ୍ୱାଳା ହୁଏ । ବସିବା ବେଳେ ମଳଦ୍ୱାର ଦରଜ ଲାଗେ ।

**(ଗ) ରକ୍ତ ସ୍ରାବ**—ବେଳେ ବେଳେ ଅର୍ଶ ଫାଟି ରକ୍ତ ବାହାରିଥାଏ । ମଳରେ ରକ୍ତ ପରିଲକ୍ଷିତ ହୁଏ । ମଳ ସହିତ ରକ୍ତ, ମଳ ତ୍ୟାଗ ପୂର୍ବରୁ ରକ୍ତ, ମଳତ୍ୟାଗ ପରେ ରକ୍ତ, ରକ୍ତ ନିୟମିତ, ଅନିୟମିତ, ସାମୟିକ କ୍ୱଚିତ୍ ରକ୍ତ ଠୋପା ଠୋପା ବା ଧାର ଧାର ପିଚକାରୀ ମାରିଲା ପରି ପ୍ରଚୁର ରକ୍ତ ସ୍ରାବ ହୋଇଥାଏ । ପୁରାତନ ହେଲେ ମଳତ୍ୟାଗ ବ୍ୟତୀତ ଅନ୍ୟ ସମୟରେ ମଧ୍ୟ ରକ୍ତ ସ୍ରାବ ପରିଲକ୍ଷିତ ହୋଇଥାଏ ।

**(ଘ) ଅର୍ଶର ଅନ୍ୟ କେତେକ ଲକ୍ଷଣ**—କେତେକ ଅର୍ଶ ରୋଗୀଙ୍କର ମଳଦ୍ୱାର ଶୋଥ, ପେଟ ଫାମିବା, ପେଟ ଗୁଡୁଗୁଡୁ ହେବା, ଅଜୀର୍ଣ୍ଣ, ଅରୁଚି, ରକ୍ତ ହୀନତା ଓ ଦୁର୍ବଳତା ଆଦି ଶାରୀରିକ କଷ୍ଟ ହୋଇଥାଏ । ଅର୍ଶ ରୋଗୀର ଲକ୍ଷଣମାନଙ୍କୁ ଦେଖି ତାକୁ ୪ଟି ଅବସ୍ଥାରେ ବିଭକ୍ତ କରାଯାଇପାରେ ଯଥା—ପ୍ରଥମାବସ୍ଥା, ଦ୍ୱିତୀୟାବସ୍ଥା, ତୃତୀୟାବସ୍ଥା, ଚତୁର୍ଥାବସ୍ଥା ।

ପ୍ରଥମାବସ୍ଥାରେ ଅର୍ଶରୁ ରକ୍ତ ପଡ଼ିଥାଏ ଏବଂ ରୋଗୀର ଅଳ୍ପ ଅଳ୍ପ ରକ୍ତ ମଳ ସହିତ ଆସେ । ଏହା ବହୁ ଦିନ ରହିପାରେ । ଅର୍ଶର ବଳୀ ମଳଦ୍ୱାର ମଧ୍ୟରେ କେବଳ ରହିଥାଏ, ବାହାରକୁ ଆସିନଥାଏ । ଦ୍ୱିତୀୟାବସ୍ଥାରେ ଅର୍ଶର ବଳୀ ମଳତ୍ୟାଗ ସମୟରେ ସ୍ୱତଃ ମଳଦ୍ୱାର ପାଖକୁ ଆସି ପୁଣି ଭିତରକୁ ପଶିଯାଇଥାଏ । ବେଳେ ବେଳେ ବାହାରକୁ ଆସୁଥିବା ଅର୍ଶକୁ ଅଙ୍ଗୁଳି ଦ୍ୱାରା ଭିତରକୁ ଠେଲି ପୁରାଇବାକୁ ହୋଇଥାଏ । ତୃତୀୟାବସ୍ଥାରେ ଅର୍ଶର ବଳୀ ମଳତ୍ୟାଗ ବ୍ୟତୀତ ରୋଗୀ ଦୁର୍ବଳ ଓ କ୍ଳାନ୍ତ ହୋଇଥିବା ସମୟରେ ପଦାକୁ ବାହାରି ଆସିଥାଏ । ଫଳରେ ରୋଗୀ ଗୁରୁତା ଅନୁଭବ କରିଥାଏ । ଚତୁର୍ଥାବସ୍ଥାରେ ଅର୍ଶର ବଳୀ ସମ୍ପୂର୍ଣ୍ଣ ଭାବେ ମଳଦ୍ୱାରର ବାହାରକୁ ବାହାରି ଆସିଥାଏ । ଯାହାଦ୍ୱାରା ରୋଗୀ ଅତି ଅସ୍ୱାଭାବିକ ପରିସ୍ଥିତିର ସମ୍ମୁଖୀନ ହୋଇଥାଏ ।

## ଅର୍ଶ ରୋଗର ସହଜ ଚିକିତ୍ସା

ଅର୍ଶ ରୋଗୀ ଶୁଖିଲା ଲଙ୍କା, ରାଗ ମସଲା, ଲୁଣି ମାଛ, ଶୁଖୁଆ, ତେଲ ଛଣା ଜିନିଷ, ଖଟା ଇତ୍ୟାଦି ଖାଦ୍ୟ ବର୍ଜନ କରିବା ଆବଶ୍ୟକ । ତେଣୁ ଏହି ପ୍ରକାର ରୋଗୀ ଭାତ, ରୁଟି, ସବୁଜ ପରିବାରୁ ପ୍ରସ୍ତୁତ ତରକାରୀ, ଦହି, ବେଲ ଓ ଅମୃତଭଣ୍ଡା ଇତ୍ୟାଦି ଖାଦ୍ୟ ଖାଇବା ଆବଶ୍ୟକ । ଏହା ସହିତ ରୋଗୀ ଉଷୁମ ପାଣିରେ ଫିଟିକିରି ପକାଇ ମଳଦ୍ୱାର ବୁଡ଼ାଇ ପାଞ୍ଚ ଛଅ ମିନିଟ ବସିଲେ ମଳଦ୍ୱାରର ଯନ୍ତ୍ରଣା ନିବାରିତ ହୋଇଥାଏ । ଅର୍ଶ ରୋଗରୁ ମୁକ୍ତି ପାଇଁ କେତୋଟି ସହଜ ଚିକିତ୍ସା ମଧ୍ୟ କରାଯାଇପାରେ ।

(୧) ଭୁଇଁ କଦମର ମୂଳକୁ ଉତ୍ତମ ରୂପେ ଚୂର୍ଣ୍ଣ କରି ଗାଈର ଘୋଳ ଦହି ସହିତ ସେବନ କଲେ ଅର୍ଶ ରୋଗ ଆରୋଗ୍ୟ ହୋଇଥାଏ ।

(୨) ରକ୍ତାର୍ଶ ରୋଗରୁ ଆରୋଗ୍ୟ ପାଇଁ ପଦ୍ମ କେଶରକୁ ଚୂର୍ଣ୍ଣ କରି ଚିନି ଓ ଲହୁଣୀ ସହିତ ସେବନ କଲେ ଅର୍ଶ ରୋଗୀର ରକ୍ତ ସ୍ରାବ ବନ୍ଦ୍ ହୋଇଥାଏ ।

(୩) ନିମ୍ବ ଫଳ ମଞ୍ଜି ଚିକ୍କଣ କରି ବାଟି ପାଣିରେ ମିଶାଇ ଛାଣି ସେଥିରେ ସାମାନ୍ୟ ଚୁଲିର ମାଟି ମିଶାଇ ପିଇଲେ କିଛି ଦିନ ପରେ ରକ୍ତାର୍ଶ ଆରୋଗ୍ୟ ହୋଇଥାଏ ।

(୪) ପାନ ଚେର ୧୨ ଗ୍ରାମ୍‌କୁ ଚିକ୍କଣ କରି ବାଟି ସେଥିରେ ୧୨ ଗ୍ରାମ୍ ପୁରୁଣା କିସ୍‌ମିସ୍‌କୁ ବାଟି ଏକତ୍ର ମିଶାଇ ବଟିକା କରି ପ୍ରତି ଦିନ ସକାଳେ ବାସି ପାଣିରେ ଗୋଟିଏ କରି ବଟିକା ଖାଇଲେ ଅର୍ଶରୁ ରକ୍ତ ପଡ଼ିବା ବନ୍ଦ୍ ହୋଇଥାଏ ।

(୫) ନିମ୍ବ ମଞ୍ଜିର ଶସ ୧୧ଟା ବାଟି ଘୋଳ ଦହି ସହିତ ପ୍ରତି ଦିନ ସକାଳେ ୧୧ ଦିନ ଖାଇଲେ ରକ୍ତାର୍ଶରୁ ରକ୍ତ ବନ୍ଦ ହୋଇଥାଏ ।

(୬) ଅରଖ କ୍ଷୀରରେ ଅଫିମ ମିଶାଇ ଅର୍ଶର ବଳୀରେ ଲଗାଇଲେ ଏହାର ଯନ୍ତ୍ରଣା ନାଶ ହୋଇଥାଏ ।

(୭) ନିମ୍ବ, ଖଜୁରୀ, କ୍ଷୀରକୋଳି, ବଟ, ଅଶ୍ୱତ୍ଥ, ଡିମ୍ବିରିର ଛାଲିକୁ ସମ ପରିମାଣ ନେଇ ପାଣିରେ ସିଝାଇ ଅଧା ପାଣି ମରିଗଲେ ତାକୁ ଛାଣି ମଳଦ୍ୱାର ବୁଡ଼ାଇ ବସିଲେ ଅର୍ଶ ରୋଗରୁ ଆରୋଗ୍ୟ ମିଳେ ।

(୮) ଜହ୍ନି ମଞ୍ଜିର ଗୁଣ୍ଡ କନାରେ ବାନ୍ଧି ଅର୍ଶରେ ଘଷିଲେ ଅର୍ଶ ବଳୀ ଖସି ପଡ଼ିଥାଏ ।

ଅର୍ଶ ଏକ ମାରାତ୍ମକ ରୋଗ ହୋଇଥିବାରୁ ଏହି ରୋଗରୁ ମୁକ୍ତି ପାଇଁ ଅଭିଜ୍ଞ ଚିକିତ୍ସକଙ୍କ ପରାମର୍ଶକ୍ରମେ ଔଷଧ ସେବନ ତଥା ଆବଶ୍ୟକସ୍ଥଳେ ଶସ୍ତ୍ର କର୍ମ କରାଇ ରୋଗରୁ ଆରୋଗ୍ୟ ହେବା ଆବଶ୍ୟକ ।

ଓଡ଼ିଶା ଆୟୁର୍ବେଦ ସେବା ସଦନ,
ଓ: ଏମ୍: ପି: ମାର୍କେଟ୍ କମ୍ପ୍ଲେକ୍ସ,
ଓ: ଏମ୍: ପି: ଛକ, କଟକ ।

# ସୁଭଦ୍ରା : ଯୋଗମାୟା

ଇଞ୍ଜିନିୟର ରଘୁନାଥ ପାଡ଼ି

ଜୀବ ଓ ବ୍ରହ୍ମ ମଧ୍ୟରେ ଯୋଗମାୟାହିଁ ମୂଳ ପ୍ରକୃତି ରୂପେ ପ୍ରତିଷ୍ଠିତା । ଯୋଗ ଶାସ୍ତ୍ରରେ ସୁଦର୍ଶନଙ୍କ ନାମ ଆଦିଲିଙ୍ଗ, ବଳଭଦ୍ର ଅନାହତ ବା ଜୀବଚକ୍ର, ସୁଭଦ୍ରା ଆଜ୍ଞାଚକ୍ରର ଅଧିଶ୍ୱରୀ ପ୍ରକୃତି ରୂପିଣୀ ଯୋଗମାୟା ଓ ଜଗନ୍ନାଥ ସହସ୍ରାରଚକ୍ରର ପରମାରାଧ୍ୟ ଚୈତନ୍ୟ ପୁରୁଷ । ଯୋଗୀ ଚୈତନ୍ୟ ପ୍ରାପ୍ତି ପାଇଁ ଭ୍ରୂଲତା ମଧ୍ୟବର୍ତ୍ତୀ ଆଜ୍ଞାଚକ୍ର ବା ମାନସଚକ୍ରରେ ଯୋଗମାୟାଙ୍କୁ ଉପଲବ୍ଧି କରିଥାଏ । ବିସର୍ଗାସିକା ବିଷ୍ଣୁମାୟା ଊର୍ଦ୍ଧ୍ୱ ମାତ୍ରାରେ ବ୍ରହ୍ମ ସହ ବିଲୀନ ଓ ଅଧ ମାତ୍ରାରେ ଜଗତ କଳ୍ପନାରେ ପ୍ରତିଷ୍ଠିତା । ତେଣୁ କରପଲ୍ଲବ ଶୂନ୍ୟା ନିର୍ଲିପ୍ତାନିର୍ଗୁଣା ପରାଶକ୍ତି ସୁଭଦ୍ରାଙ୍କର ଜୀବ ଚୈତନ୍ୟ ବଳଭଦ୍ର ଓ ବ୍ରହ୍ମ ଚୈତନ୍ୟ ଜଗନ୍ନାଥଙ୍କ ମଧ୍ୟରେ ସ୍ଥିତି, ପୁରୁଷୋତ୍ତମ ତତ୍ତ୍ୱର ସର୍ବଶ୍ରେଷ୍ଠ ପ୍ରଚେଷ୍ଟା ।

"ଯୋଗମାୟା ପରାଂ ନିତ୍ୟା ସୁଭଦ୍ରା ମୋହ ରୂପିଣୀ
ନିର୍ଗୁଣା ବିଷ୍ଣୁମାୟାସି ନାଦ ବିଦ୍ୟାମୟୀ ସ୍ୱୟମ୍ ।।"

(ଉଡ୍ଡୀଶ ତନ୍ତ୍ର ୨/୨/୫)

ଶରୀର ତତ୍ତ୍ୱରେ ସୁଭଦ୍ରା ହେଉଛନ୍ତି ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟସ୍ଥିତ ଆଜ୍ଞାଚକ୍ରର ଅଧିଶ୍ୱରୀ । ପଦ୍ମନାଡ଼, ପଦ୍ମଫୁଲ ଓ ପଦ୍ମ ବୃକ୍ଷକୁ ସଂଯୋଗ କଲାପରି ସୁଭଦ୍ରା ହେଉଛନ୍ତି ସ୍ରଷ୍ଟା ଓ ସୃଷ୍ଟି ମଧ୍ୟରେ ଥିବା ମହାନ୍ ସଂଯୋଜିକା ଶକ୍ତି । ସଗୁଣ ବ୍ରହ୍ମ ବଳଭଦ୍ରଙ୍କ ପରି ମାୟାରୂପିଣୀ ସୁଭଦ୍ରାଙ୍କ ନାଶାରନ୍ଧ୍ର ଭ୍ରୂ, ଚକ୍ଷୁରନ୍ଧ୍ର ଓ ଅଧର ରେଖା ବିଦ୍ୟମାନ କିନ୍ତୁ ନିର୍ଗୁଣ ବ୍ରହ୍ମ ଜଗନ୍ନାଥ ଜୀବ ଲକ୍ଷଣ ରହିତ ।

**ସ୍ୱ ରଚନା :**

ଜୀବ ବ୍ରହ୍ମ ମଧ୍ୟେ ଯୋଗମାୟା ଅବସ୍ଥିତି ।
ଆଜ୍ଞାଚକ୍ର ଅଧିଶ୍ୱରୀ ସେ ମୂଳ ପ୍ରକୃତି ।।
ଭ୍ରୂଲତା ମଧ୍ୟରେ ଆଜ୍ଞାଚକ୍ର ବିଦ୍ୟମାନ ।
ଯୋଗୀ ମାନସ ଚକ୍ରରେ ସଦା କରେ ଧ୍ୟାନ ।।
ବିସର୍ଗ ଆସିକା ବିଷ୍ଣୁମାୟା ପରାଶକ୍ତି ।
ଊର୍ଦ୍ଧ୍ୱ ମାତ୍ରାରେ ତଲ୍ଲୀନ ବ୍ରହ୍ମ ସଙ୍ଗେ ସତୀ ।।
ଅଧ ମାତ୍ରାରେ ତଲ୍ଲୀନ ବିଶ୍ୱ ଘଟନାରେ ।
ସ୍ୱର୍ଗ ମର୍ତ୍ତ୍ୟ ପ୍ରଭାବିତ ଦେବୀ ଶକ୍ତି ବଳେ ।।
କରପଲ୍ଲବ ବିହୀନା ନିର୍ଗୁଣା ନିର୍ଲିପ୍ତା ।
ଜୀବ ବ୍ରହ୍ମ ମଧ୍ୟେ ବିଜେ, ବାହ୍ୟ ଦେହ ଗୁପ୍ତା ।।
ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ ଆଜ୍ଞାଚକ୍ରେ ସ୍ଥିତି ।
ସ୍ରଷ୍ଟା ସୃଷ୍ଟି ମଧ୍ୟେ ଦେବୀ ସଂଯୋଜିକା ଶକ୍ତି ।।
ପଦ୍ମନାଡ଼ ସମ ପଦ୍ମପୁଷ୍ପ ଓ ବୃକ୍ଷକୁ ।
ଯୋଗ କରେ ଯୋଗମାୟା ପିଣ୍ଡ ବ୍ରହ୍ମାଣ୍ଡକୁ ।।
ଭଦ୍ରାମୁଖେ ଶୋହେ ଯଥା ବଳଭଦ୍ର ସମ ।
ନାଶା, ଭ୍ରୂଲତା, ଅଧର ରେଖା, ରନ୍ଧ୍ର ଚକ୍ଷୁ ।।
ଜୀବ ଲକ୍ଷଣ ରହିତ ପ୍ରଭୁ ଜଗନ୍ନାଥ ।
ନିର୍ଗୁଣ ଅବ୍ୟକ୍ତ ବ୍ରହ୍ମ ଅନାଦି ଅନନ୍ତ ।।

ଏକ୍ସିକ୍ୟୁଟିଭ୍ ଇଂଜିନିୟର୍,
ପିଲିଉ ଡିଭିଜନ, କାଳିଆପାଣି,
ଯାଜପୁର ।

# କରୁଣାମୟୀ ମାଆ

ଶ୍ରୀ ନୃସିଂହ ଚରଣ ପରୀକ୍ଷା

ମାଆ ବୋଲି ଆମ୍ଭେମାନେ ଯେଉଁ ଅଦ୍ୱିତୀୟାଙ୍କୁ ପୂଜା କରୁ, ସେ ହେଲେ ଏକାକ୍ଷରା । ସେ ହେଲେ ବିଶ୍ୱସତ୍ତାର ଅଧିଷ୍ଠାତ୍ରୀ । ତେବେ ବି ସେ ଆମମାନଙ୍କ ସମ୍ମୁଖରେ ନାନା ରୂପରେ ଆବିର୍ଭୂତା ହୁଅନ୍ତି । ତନ୍ତ୍ର ସାଧନାରେ ତାଙ୍କୁ ଆଦ୍ୟାଶକ୍ତି ଓ ମହାଶକ୍ତି ରୂପେ ପୂଜା କରାଯାଏ । ଶ୍ରୀଶ୍ରୀ ଚଣ୍ଡୀର ବର୍ଣ୍ଣନାନୁସାରେ ମା' ହେଲେ ତ୍ରିଗୁଣାମୟୀ । ସେ ହେଲେ ତମୋଗୁଣରୂପୀ ମହାକାଳୀ, ରଜଃଗୁଣ ସମ୍ପନ୍ନା ମହାଲକ୍ଷ୍ମୀ ଓ ସତ୍ତ୍ୱଗୁଣରୂପା ମହାସରସ୍ୱତୀ ।

ଆଦ୍ୟାଶକ୍ତି ରୂପେ ମା' ତାଙ୍କର ସର୍ବୋତ୍ତମ ରୂପରେ ପୁରୁଷୋତ୍ତମଙ୍କୁ ଧାରଣ କରି କ୍ଷର ଓ ଅକ୍ଷର ଉଭୟ ମଧ୍ୟଦେଇ ଭଗବାନଙ୍କୁ ବିଶ୍ୱରେ ଅଭିବ୍ୟକ୍ତ କରୁଛନ୍ତି । ମା' ହେଲେ ପରମେଶ୍ୱରଙ୍କ ଚୈତନ୍ୟ ଓ ଶକ୍ତି ଏବଂ ଭଗବାନଙ୍କ ଦ୍ୱୈତ ବିଭାବ ମଧ୍ୟରୁ ସେ ହେଲେ ସଚଳା କ୍ରିୟାତ୍ମିକା ଶକ୍ତି । ବିଶ୍ୱ ଜଗତର ପ୍ରଭୁ ହିସାବରେ ଈଶ୍ୱର ମାଆଙ୍କ ମଧ୍ୟରୁ ହିଁ ଆସିଥାନ୍ତି ଏବଂ ମା' ପୁଣି ବିଶ୍ୱେଶ୍ୱରୀ ମହାଶକ୍ତି ରୂପେ ଈଶ୍ୱରଙ୍କ ପାର୍ଶ୍ୱରେ ନିଜର ଆସନ ଗ୍ରହଣ କରନ୍ତି ।

ମା'ଙ୍କ ସତ୍ତା ତିନୋଟି ଧାରାକୁ ନେଇ ଗଠିତ :— (୧) ବିଶ୍ୱାତୀତ, (୨) ବିଶ୍ୱଗତ (୩) ବ୍ୟଷ୍ଟିଗତ । ପ୍ରଥମତଃ ବିଶ୍ୱାତୀତା ଆଦ୍ୟାପରା ଶକ୍ତି । ସକଳ ଭୁବନର ଉର୍ଦ୍ଧ୍ୱରୁ ପରମ ବ୍ରହ୍ମଙ୍କର ଅବ୍ୟକ୍ତ ରହସ୍ୟ ସହିତ ସୃଷ୍ଟିର ସଂଯୋଗ ସ୍ଥାପନ କରନ୍ତି । ତାଙ୍କ ମଧ୍ୟରେ ପୁରୁଷୋତ୍ତମ ଶାଶ୍ୱତ ସଚ୍ଚିଦାନନ୍ଦ ରୂପେ ନିତ୍ୟ ପ୍ରକଟ ହୋଇଛନ୍ତି । ସେହି ସଚ୍ଚିଦାନନ୍ଦ ମା'ଙ୍କୁ ଆଶ୍ରୟ କରି ଦ୍ୱୈତାଦ୍ୱୈତ ଚୈତନ୍ୟ ରୂପେ, ଈଶ୍ୱର ଓ ଶକ୍ତି ରୂପେ ପୁରୁଷ ଓ ପ୍ରକୃତି ଭାବରେ ସକଳ ଜଗତରେ ଅଭିବ୍ୟକ୍ତ ହୋଇଛନ୍ତି । ସକଳ ପୁରୁଷୋତ୍ତମଙ୍କ ସହିତ ତାଙ୍କରଲୀଳା ।

ଦ୍ୱିତୀୟତଃ ମା' ହେଲେ ବିଶ୍ୱବ୍ୟାପୀ ବିଶ୍ୱରୂପିଣୀ । ଏହି ଯାବତୀୟ ସୃଷ୍ଟିର ଜନ୍ମ ଦାତ୍ରୀ । ମା' ତାଙ୍କର ବିଶ୍ୱାତୀତ ଚେତନାରେ ଯାହାକିଛି ଉତାରି ଆଣନ୍ତି ବିଶ୍ୱମୟୀ ରୂପେ ତାହାକୁ ଗତରେ ଅଭିବ୍ୟକ୍ତ କରନ୍ତି । ଏହି ବ୍ୟକ୍ତି ଜଗତର ଉର୍ଦ୍ଧ୍ୱରେ ସତ୍-ଚିତ୍-ଆନନ୍ଦର ଲୋକ ସକଳ । ମା' ସେଠାରେ ଅତି ମାନସ ମହାଶକ୍ତି ରୂପେ ଦଣ୍ଡାୟମାନ । ପୁନଶ୍ଚ ଆମ୍ଭେମାନେ ଯେଉଁ ବିଶ୍ୱରେ ବାସକରୁ ସେଠାରେ ମନପ୍ରାଣ ଓ ଶରୀରରେ ଅଜ୍ଞାନ ଜଗତ ସକଳ ବିଦ୍ୟମାନ । ତାହାକୁ ମଧ୍ୟ ବିଶ୍ୱମାତା ଧାରଣ କରି ରହିଛନ୍ତି ଓ କ୍ରମ ବିବର୍ତ୍ତନ ଦିଗରେ ସୃଜନ କରୁଛନ୍ତି ।

ତୃତୀୟତଃ ମା' ହେଲେ ବ୍ୟଷ୍ଟିଗତା । ତାଙ୍କର ବିଶ୍ୱାତୀତ ଓ ବିଶ୍ୱଗତ ଧାରାକୁ ଜୀବନ୍ତ ଓ ଗୋଚର କରି ଧରିବା ପାଇଁ ସେ ତାଙ୍କର ଦେବ ସ୍ୱରୂପ ବିସର୍ଜନ କରି ଏହି ଜଘନ୍ୟ ପୃଥିବୀ ମଧ୍ୟକୁ ଅବତରଣ କରି ଆସନ୍ତି । ସେ ହେଉଛନ୍ତି ଜୀବ ଓ ପରମଙ୍କ ମଧ୍ୟରେ ସଂଯୋଗ କାରିଣୀ ସେତୁ ସ୍ୱରୂପ । ମାଆ ଏହି ତ୍ରିବିଧ ନିମ୍ନତର ଜଗତ ମଧ୍ୟରେ ଓହ୍ଲାଇ ଆସନ୍ତି । ଆସନ୍ତି ଏହି ମିଥ୍ୟା ଓ ପ୍ରମାଦ ମଧ୍ୟକୁ ଯଦ୍ୱାରା ଏହାକୁ ସତ୍ୟରେ ପରିଣତ କରିପାରନ୍ତି ।

ମାଆଙ୍କର ଶକ୍ତି ଅସୀମ, ଏହି ଶକ୍ତି ଅନୁସାରେ ମା' ସାଧାରଣତଃ ଚାରିପ୍ରକାର ରୂପରେ ଆବିର୍ଭୂତା ହୋଇଥାନ୍ତି, ଯଥା :—ମାହେଶ୍ୱରୀ, ମହାକାଳୀ, ମହାଲକ୍ଷ୍ମୀ, ମହା ସରସ୍ୱତୀ, ରାଜ ରାଜେଶ୍ୱରୀ ମାହେଶ୍ୱରୀ :—ଏ ହେଲେ ପରମ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ । ସେ ତାଙ୍କର ସାର୍ବଭୌମ ଜ୍ଞାନ ଦ୍ୱାରା ବିଶ୍ୱର କାର୍ଯ୍ୟ କରନ୍ତି । ମନୁଷ୍ୟକୁ ଅତି ମାନସର ବିଶାଳତା ଓ ଜ୍ୟୋତିର ଐଶ୍ୱର୍ଯ୍ୟ ସେ ଉନ୍ମୁକ୍ତ କରି ଦିଅନ୍ତି । ମନୁଷ୍ୟ ପ୍ରକୃତିକୁ ଭାଗବତ ସତ୍ୟରେ ନିର୍ମାଣ କରିବା ହେଲା ତାଙ୍କର କାର୍ଯ୍ୟ । ସେଥିପାଇଁ ସେ ପ୍ରତ୍ୟେକ ମନୁଷ୍ୟର ପ୍ରକୃତି ଅନୁସାରେ କାର୍ଯ୍ୟକରନ୍ତି । ଜ୍ଞାନୀ ନିକଟରେ ତାଙ୍କ ପରାଜ୍ଞାନର ରହସ୍ୟ ଉନ୍ମୋଚନ କରନ୍ତି ଓ ଭଗବତ୍ ବିଦ୍ୱେଷୀ ଓ ଅଜ୍ଞାନକୁ ଅଜ୍ଞାନତାର ଗହ୍ୱର ମଧ୍ୟରେ ବୁଡ଼ାଇରଖନ୍ତି । ରାକ୍ଷସ, ପିଶାଚ, ଭଗବତ୍ ବିରୋଧୀ ସକଳେ ତାଙ୍କରି ସନ୍ତାନ ଓ ସମସ୍ତଙ୍କ ପ୍ରତି ତାଙ୍କ କରୁଣାଧାରା ପ୍ରଭାବିତ । ସୃଷ୍ଟିର ବିଧାନ, କାଳ ବିଭାଗ ଓ ଭୂତ ଭବିଷ୍ୟତ ସକଳ ତାଙ୍କର ବୋଧିଜ୍ଞାନ ଦ୍ୱାରା ସ୍ଥିରୀକୃତ । ଭବିଷ୍ୟତରେ ସୃଷ୍ଟି କିପରି ରୂପନେବ, କେଉଁ ଭାବେ କ୍ରମ ବିକାଶର ଧାରା ସୃଜିତ ହେବ ସେ ତାଙ୍କର ସୃଜନଶୀଳ ଦୃଷ୍ଟିରେ ସ୍ଥିର କରନ୍ତି । କାରଣ ସେ ହେଲେ ସେହି ଶକ୍ତିମୟୀ, ଜ୍ଞାନମୟୀ ଯେ ଆପଣାଙ୍କ ଅନନ୍ତ ବିଶ୍ୱବ୍ୟାପୀ, ବିଶାଳତା ଆଦିକୁ, ତାଙ୍କର ଚିରନ୍ତନ ଶକ୍ତିଧାରାର ଅପ୍ରମେୟ ଗତିଛନ୍ଦ ଆଦିକୁ ଉନ୍ମୁକ୍ତ କରି ଦିଅନ୍ତି ।

**ମହାକାଳୀ :**

ମା' କାଳୀଙ୍କର ପ୍ରକୃତି ହେଲା ଭିନ୍ନ ପ୍ରକାରର । ତେଜ ଓ ବୀର୍ଯ୍ୟ ହେଲା ତାଙ୍କର ନିଜସ୍ୱ ବିଶେଷତ୍ୱ । ଦୁର୍ବଳ, ଭୀରୁ ମାନବ

ପକ୍ଷରେ ତାଙ୍କର ରୂପ ପୀଡ଼ାଦାୟକ । ଅସୁର ଓ ଭଗବାନ ବିଦ୍ୱେଷୀଙ୍କ ପ୍ରତି ଭୟଙ୍କର ତାଙ୍କର ମୁଖ ମଣ୍ଡଳ । କାରଣ ସେ ହେଲେ ରଣ ବିଳାସିନୀ, ସଂଗ୍ରାମ ପାଇଁ ସଦା ଉଦ୍ୟତ । ଭଗବତ୍ କର୍ମରେ ସାମାନ୍ୟ ଔଦାସିନ୍ୟ ଓ ଶୈଥିଲ୍ୟ ତାଙ୍କର ଅସହ୍ୟ । ମା'ଙ୍କର ଏହି ଶକ୍ତି କ୍ଷିପ୍ରତା ଓ ଆଶୁ ଫଳଦାୟୀ ପ୍ରକ୍ରିୟା ନିମିତ୍ତ ରହିଛି ଯାହାର ଅଭାବରେ ଦିନକରେ ଯେଉଁ କାର୍ଯ୍ୟ ହୁଏ ତାହା ସମ୍ପୂର୍ଣ୍ଣ କରିବାକୁ ବହୁ ଶତାବ୍ଦୀର ପ୍ରୟୋଜନ ହୁଅନ୍ତା । ମହାକାଳୀଙ୍କ ସ୍ନେହ ମଧ୍ୟ ତାଙ୍କ କ୍ରୋଧ ପରି ତୀବ୍ର । ଯଦି ମା'ଙ୍କୁ ଏହି ଶକ୍ତି ସହ ଆସିବାକୁ ଦିଆଯାଏ ତେବେ ଯେଉଁ ସବୁ ବାଧା ଆମ୍ଭମାନଙ୍କ ଅଗ୍ରଗତିକୁ ବ୍ୟାହତ କରନ୍ତି । ଯେଉଁ ସବୁ ଶତ୍ରୁ ସାଧକଙ୍କୁ ଆକ୍ରମଣ କରନ୍ତି, ସେ ସବୁକୁ ସେ ମୁହୂର୍ତ୍ତକରେ ଚୂର୍ଣ୍ଣ କରନ୍ତି ଓ କ୍ଷିପ୍ର ବେଗରେ ଆଧ୍ୟାତ୍ମିକ ସିଦ୍ଧି ଦିଗରେ ଟାଣି ନିଅନ୍ତି ।

## ମହାଲକ୍ଷ୍ମୀ :

ମାଆଙ୍କର ଆହୁରି ଏକ ସୂକ୍ଷ୍ମତର ରହସ୍ୟ ଅଛି, ଯାହାକି ମଣିଷକୁ ଅଭିଭୂତ କରେ । ଜ୍ଞାନ ଓ ସାମର୍ଥ୍ୟର ଊର୍ଦ୍ଧ୍ୱରେ ଶାଶ୍ୱତ ସୌନ୍ଦର୍ଯ୍ୟ ଓ ଇନ୍ଦ୍ରିୟ ଅନଧିଗମ୍ୟ ଦିବ୍ୟ ଆନନ୍ଦର ରାଜ୍ୟ ବିଦ୍ୟମାନ । ଏହି ପ୍ରେମ ଓ ଆନନ୍ଦର ଅଧିଶ୍ୱରୀ ଦେବୀ ହେଲେ ମହାଲକ୍ଷ୍ମୀ । ଦେହଧାରୀ ଜୀବ ପାଖରେ ଭାଗବତୀ ଶକ୍ତିଙ୍କର ଏପରି କୌଣସି ଚିତ୍ତ ବିମୋହନକାରୀ ପ୍ରକାଶ ଆଉ ନାହିଁ । ମନେ ହୁଏ ମାହେଶ୍ୱରୀ ଯେପରି ଅତି ଦୂରର ବସ୍ତୁ । ପୁନଶ୍ଚ ମନୁଷ୍ୟ ପ୍ରକୃତିର ଦୁର୍ବଳତା ମହାକାଳୀଙ୍କ ପ୍ରଚଣ୍ଡତା ସହ୍ୟ କରିପାରେ ନାହିଁ । କିନ୍ତୁ ମହାଲକ୍ଷ୍ମୀଙ୍କ ଆଡ଼କୁ ସମସ୍ତେ ଉନ୍ମୁଖ । ତାଙ୍କ ଆନନ୍ଦମୟ ସାନ୍ନିଧ୍ୟ ଲାଭ କରିବା ପରମ ସୌଭାଗ୍ୟ । ଯେଉଁଠାରେ ପ୍ରେମ ଓ ଆନନ୍ଦ ନଥାଏ, ସେଠାରୁ ସେ ଅବିଳମ୍ବେ ମୁହଁ ଫେରାନ୍ତି ଓ ବୈଭବ ଢାଳିବାକୁ ଅନିଚ୍ଛା ପ୍ରକାଶ କରନ୍ତି । ତାଙ୍କରି କରୁଣାରୁ ମନୁଷ୍ୟ ସମାଜ ଅନ୍ନ–ବସ୍ତ୍ର ପାଇଁ ଆନନ୍ଦରେ କାଳାତିପାତ କରୁଛି । ଯେଉଁ ମନୁଷ୍ୟ ହୃଦୟରେ ପୂରି ରହିଥାଏ ସ୍ୱାର୍ଥପରତା, ଦ୍ୱେଷ, ଇର୍ଷା, ହିଂସା ତତ୍‌କ୍ଷଣାତ୍ ସେ ମୁଖ ଫେରାଇ ଆଣନ୍ତି । ପ୍ରେମ ଓ ସୌନ୍ଦର୍ଯ୍ୟ ମଧ୍ୟଦେଇ ସେ ମନୁଷ୍ୟକୁ ଭଗବାନଙ୍କ ପାଖରେ ବାନ୍ଧି ଦିଅନ୍ତି ।

## ମହା ସରସ୍ୱତୀ :

ଏ ହେଲେ ମା'ଙ୍କର କର୍ମ ଶକ୍ତି, ତାଙ୍କର ପୂର୍ଣ୍ଣତାର ଓ ଶୃଙ୍ଖଳାର ମୂର୍ତ୍ତି । ମା'ଙ୍କର ଯେଉଁ ଚାରି ରୂପ ରହିଲା ସେଥି ମଧ୍ୟରେ ଏ ହେଲେ କନିଷ୍ଠା । କିନ୍ତୁ ନିପୁଣତାର ସହିତ ସେ କାର୍ଯ୍ୟ ସମ୍ପାଦନ କରନ୍ତି । ମହା ସରସ୍ୱତୀ ବିଶ୍ୱ ଶକ୍ତି ରାଜିର ବୃହତ୍ ଧାରାଗୁଡ଼ିକୁ ପର୍ଯ୍ୟବେକ୍ଷଣ କରନ୍ତି । ବସ୍ତୁରାଜିର ପ୍ରୟୋଗ ନୀତି, ଗଠନ ନୀତି ଓ କାରୁ ପଦ୍ଧତି ହେଲା ମହା ସରସ୍ୱତୀଙ୍କର ରାଜ୍ୟ । ସ୍ୱଭାବର ନବ ରୂପାନ୍ତର କାର୍ଯ୍ୟ କଲାବେଳେ ତାଙ୍କର କାର୍ଯ୍ୟ ହୁଏ ଶ୍ରମସଙ୍କୁଳ । ଅସୀମ ଧୈର୍ଯ୍ୟ ସହ, ସେ କାର୍ଯ୍ୟ କରନ୍ତି । ମନୁଷ୍ୟ ମଧ୍ୟରେ ଯେଉଁ ଦୋଷତ୍ରୁଟି ବା ଅପୂର୍ଣ୍ଣତା ରହିଛି ତାହାକୁ ସେ ଖୋଜି ବାହାର କରନ୍ତି ଏବଂ ଧୀର ଅଧ୍ୟବସାୟ ବଳରେ ପୂର୍ଣ୍ଣତା ଦିଗକୁ ଆଗେଇ ନିଅନ୍ତି । ଅଧୀର ମନୁଷ୍ୟ ପ୍ରକୃତି ଯେପରି ସହଜ ସଫଳତା ଖୋଜେ ଏବଂ କୌଣସି ପ୍ରକାରରେ କାର୍ଯ୍ୟଟି ଶେଷ କରିବାକୁ ଖୋଜେ ସେପରି ସ୍ୱଭାବ ତାଙ୍କର ନୁହେଁ । ଅଯତ୍ନ, ଅବହେଳା ଓ ଆଳସ୍ୟ ପ୍ରତି ସେ ଏକ ବାର ବିମୁଖ । ଜଗତକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଯଦି ଅନନ୍ତ କାଳ ପର୍ଯ୍ୟନ୍ତ ପରିଶ୍ରମ କରିବାକୁ ପଡ଼େ ତେବେ ସେ ପ୍ରସ୍ତୁତ ଥାଆନ୍ତି । ମା' ମହା ସରସ୍ୱତୀଙ୍କର ସମସ୍ତ କାର୍ଯ୍ୟ ହିଁ ନିର୍ଭୁଲ, ପରିପୂର୍ଣ୍ଣ ଓ ଚମତ୍କାର ଭାବରେ ସୁସଜ୍ଜିତ ହୋଇ ରହିଥାଏ । ତାଙ୍କର ଏକମାତ୍ର ଦାବୀ, ଆମ୍ଭମାନଙ୍କର ସଂକଳ୍ପ ଯେପରି ଏକମୁଖୀ ହୁଏ । ଏକନିଷ୍ଠ ଚିତ୍ତରେ ଆମେ ପୂର୍ଣ୍ଣତା ଦିଗରେ ଅଗ୍ରସର ହେଉ । କାରଣ ! ସେ ଦ୍ୱିଧା ଚିତ୍ତ ସହ୍ୟ କରି ପାରନ୍ତି ନାହିଁ । ଅଭିନୟ, ଛଳନା ଓ ଆତ୍ମ ବଡ଼ିମା ପାଇଁ ସେ ନିର୍ଦ୍ଦୟ । ମନୁଷ୍ୟର ସମସ୍ତ ଦୋଷ ଗୁଡ଼ିକୁ ଅଧିକ ଧୈର୍ଯ୍ୟର ସହ ସେ ସହ୍ୟ କରି ଆସିଛନ୍ତି । ଅଭାବରେ ମାତା, ବିପଦରେ ବନ୍ଧୁ ଓ ଅନ୍ଧକାରରେ ସେ ପଥ ପ୍ରଦର୍ଶକ ରୂପେ ସର୍ବଦା ଆମ ପାଖେ ପାଖେ ରହିଆନ୍ତି ।

ଏତଦ୍ ବ୍ୟତୀତ ମାଆଙ୍କର ଅନ୍ୟାନ୍ୟ ମହା ରୂପ ଅଛି । କିନ୍ତୁ ସେମାନେ ସେପରି ସ୍ପଷ୍ଟ ଭାବେ ସମ୍ମୁଖକୁ ଆସନ୍ତି ନାହିଁ । ଯେତେବେଳେ ମାଆଙ୍କର ଯାବତୀୟ ବିଗ୍ରହ ତାଙ୍କ ମଧ୍ୟରେ ଏକତ୍ରିତ ହେବ, ସେତେବେଳେ ମାଆ ଅତି ମାନସ ମହା ଶକ୍ତି ରୂପେ ପ୍ରକଟିତ ହେବେ ଏବଂ ତାଙ୍କର ଲୋକାତୀତ ଜ୍ୟୋତି ପ୍ରବାହକୁ ଉତାରି ଆଣି ଏଠିଠାରେ ଥୋଇ ଦେବେ । ସେତେବେଳେ ମାନବ ପ୍ରକୃତି ସକ୍ରିୟ ହୋଇ ଦିବ୍ୟ ପ୍ରକୃତିରେ ରୂପାନ୍ତରିତ ହୋଇ ପାରିବ ।

ଗ୍ରାମ–ବିଷ୍ଣୁପୁର ହରେକୃଷ୍ଣ,
ପୋ:ଅ:–ସକୁଲି, ଜିଲ୍ଲା–ଢେଙ୍କାନାଳ ।

# ପ୍ରକୃତି ବନାମ ଶକ୍ତି

ଶ୍ରୀ ଗୌରହରି ରାଉତ

ଶାରଦୀୟ ଶ୍ୟାମକାନ୍ତିରେ ଆଜି ପ୍ରାଣେ ପ୍ରାଣେ ପୁଲକର ମହାପାର୍ବଣ । ପ୍ରାବୃଟ ବକ୍ଷରେ ଆଉ ମେଘମେଦୁରିତ ଘନ ବର୍ଷାର ଆଗମନୀ ସମ୍ଭାର ନାହିଁ, ଶଇଳ ଶିଖରରେ ମତ୍ତଆଲା କେକୀର ଛନ୍ଦାୟିତ ନୃତ୍ୟ ଏବେ ଥମିଗଲାଣି । ତୋ'ର ରୂପ ସମ୍ଭାର ସବୁଜରୁ ଆହୁରି ସବୁଜିମା ହୋଇ ଲସି ଯାଇଛି କେଉଁ ଦିଗ୍‌ବଳୟର ଦିଗହରା ଦିଗ ଆଡ଼କୁ ।

ଘନ ବର୍ଷାର ଭାବି ଆଗମନୀରେ ତୋ'ରି କୋଳରେ ନିଜକୁ ହଜେଇ ଦେଇଥିଲି । କାକକୃଷ୍ଣ ଆକାଶ ତଳେ ଶୁଭ୍ରବଳାକା ମାଳିନୀର ମନୋମୁଗ୍ଧକର ଦୃଶ୍ୟ ମୋ'ର ଏ ଭାବୁକ ପ୍ରାଣରେ ଶତ ସୁଷମାର ଅନିନ୍ଦ୍ୟ ଆଙ୍କିଥିଲା । ଆଉ ଆଜି ତୁ ଶରତ ସମ୍ଭାରରେ ନିଜକୁ ସଜେଇଛୁ ମହା କମନୀୟତାରେ । ନିର୍ମଳ ଆକାଶରେ ଘନ ବର୍ଷାର ଡିଳେ ହେଲେ ବି ଆଶଙ୍କା ନାହିଁ । ମନ୍ଦ ମନ୍ଦ ହିମ ତୁଷାର ଆଚ୍ଛାଦିତ ଦୁର୍ବାଦଳ ସକାଳ ଶେଯରେ ସତେ ଯେମିତି ତୋ' କୋମଳ ଶରୀର ଉପରେ ମୁକ୍ତାର ଭ୍ରମ ସୃଷ୍ଟି କରୁଛନ୍ତି । ଜହ୍ନି ଫୁଲ ଖସିଗଲେଣି ତୋ' ବେଣୀରୁ । ଏବେ ଖାଲି କାଶତଣ୍ଡୀର ଶୁଭ୍ର ସଫେଦ ବର୍ଣ୍ଣ ବିଭୋର ସମ୍ଭାର........ସଂସାର ବିରାଗୀ ସନ୍ନ୍ୟାସୀ ଆତ୍ମା, ନିର୍ଜନତା ମୁଗ୍ଧ ଭାବପ୍ରବଣ କବି ଆତ୍ମା, ସୌନ୍ଦର୍ଯ୍ୟ ପିପାସୀ ଶିଳ୍ପୀ ଆତ୍ମା – ସମସ୍ତେ ତୋ'ର ଏଇ ନିତ୍ୟ ପ୍ରବହମାନ ଅମୃତ କାନ୍ତିରେ ବାନ୍ଧି ହୋଇଯିବେ ।

ତୋ' ରୂପ ସୌନ୍ଦର୍ଯ୍ୟର ମହାମହିମ ମାୟାଜାଲ କାଳେ କାଳେ ମଣିଷ ପ୍ରାଣରେ ସୃଷ୍ଟି କରିଆସିଛି ଅନ୍ୱେଷଣ ଜିଜ୍ଞାସା । ସେଇଥିପାଇଁ ସେ ବିଶ୍ୱ ସୃଷ୍ଟିର ଆରମ୍ଭରୁ ତୋ'ରି ଭିତରେ ବାରମ୍ବାର ନିଜକୁ ହଜାଇଛି ଏବଂ ଖୋଜୁଛି ନୂତନ ଭାବରେ ତୋ' ସ୍ୱରୂପିଣୀ ରୂପ ସୁଷମାର ପଟାନ୍ତର ନାହିଁ ।

xx xx xx

ହେ କାନ୍ତିମୟୀ ବହୁରୂପୀ ସୁରଭିସ୍ୱୀ ସ୍ୱରୂପିଣୀ ; ତୋ'ର ଏ ଅଲୌକିକ ମାୟାବିକ ଛନ୍ଦରେ ମୁଁ ନିଜକୁ ଭୁଲିଯାଉଛି । ସମୟର ଅନୁଯାୟୀ ବେଶ ପରିବର୍ତ୍ତନରେ ତୋ' ସ୍ୱୟଂସିଦ୍ଧ ଗରିମାକୁ କିଏ ବା କଳନା କରିବ ? ରୌଦ୍ର ନିଦାଘର ନିଃଶ୍ୱାସ ନିକ୍ଷେପରେ/ସମସ୍ତ ବିଶ୍ୱ ଜୀବନ ଉପରେ ତୁ ଯେମିତି ହୁତାଶନର ବହ୍ନି ଅଜାଡ଼ି ଦେଉ, ଅନ୍ୟ ଆଷାଢ଼ର ଅବାରିତ ବାରିପାତରେ ତାପ ଦଗ୍ଧ ଜ୍ୱାଳା ଜର୍ଜରିତ ଜୀବମାନଙ୍କୁ ଯେମିତି ଭିଜେଇ ଦେଉ ଶୀତଳ କ୍ଷଣରେ । ପର୍ଯ୍ୟାୟିତ ତାପର ମାଟିରେ ଶ୍ୟାମଳିମାର ତରଙ୍ଗ ଖେଳାଇ ସେତେବେଳେ ତୁ କରୁ ଜୀବନ ସଞ୍ଚାର । ହେ ଜୀବନ ସୃଷ୍ଟିକାରିଣୀ ଅମ୍ବା ! ପଲ୍ଲବିତ ଶ୍ୟାମ ତରୁର ସୌନ୍ଦର୍ଯ୍ୟରେ ମୋ'ର ବିହ୍ୱଳ ପ୍ରାଣ ସମସ୍ତ ଜାଗତିକ ସ୍ତରରୁ ମୁକୁଳି ଯାଇ ସେତେବେଳେ ତୋ' ବଂଶୀ କୁଞ୍ଜରେ ଡାହୁକ ଡାକ ଅନୁଭବ ଧାଇଁଯାଏ । ଆକାଶର ଘନ ବେଣୁ ଭିତରେ ଶତ କାର୍ମୁକର ସାତ ବର୍ଣ୍ଣ ଆକର୍ଷଣ କାହାକୁ ବା ଆପହରା ନକରିବ ?

ଶିଶିରର ସୋରିଷ କିଆରୀରେ, ଶରତର ନିର୍ମଳ ଜୋଛନାରେ ଆଉ ବସନ୍ତର ପୁଷ୍ପ ପରାଗ ଏବଂ କୁହୁ ତାନ ଭିତରେ ତୋ'ର ସେଇ ଚିର ରୂପୀମନ୍ତ । କାଳଚକ୍ରର ଘୂର୍ଣ୍ଣନରେ ରୂପରାଜିର ଅଭିନବ ତୋତେ ଭୁବନମଣ୍ଡଳରେ ଅଲଗା ଅଲଗା ଭାବରେ ଭୂଷିତ କରେ ।

ହେ କଷ୍ଟ ସଂହାରିଣୀ, ଆହ୍ଲାଦ ଦାୟିନୀ ପ୍ରକୃତି ! ଏବେ ମୁଁ ତୋତେ କେଉଁ ରୂପରେ ଦେଖୁଛି ? ଏ ପୁଣି ତୋ'ର କି ଅପରୂପ ଅପୂର୍ବ ମାୟା । ଲେଲିହାନ ଅଗ୍ନିକୁଣ୍ଡଳୀ ମଧ୍ୟରୁ ବାହାରି ପରାମୁଖ ଦାନବ ସ୍ୱଭାବକୁ ଆଜି ଶୂଳ-ହସ୍ତେ ସଂହାର କରୁଛୁ ! ଦିଗେ ଦିଗେ ତୋ'ର ମହୋତ୍ସବ । ଶକ୍ତିର ପରାକାଷ୍ଠାକୁ ପ୍ରତିଷ୍ଠା କରି ମାନବ ତୋ'ର ମହତ୍ୱକୁ ଅନୁଭବ କରୁଛି ଆଜି । ସତେ ତୋ ରୂପ ଆଦି ଶକ୍ତି ! ଏଇମିତି ଏ ଶାରଦୀୟ ହିଲ୍ଲୋଳରେ ତୋର ରୂପ ସମ୍ଭାର ଧୀରେ ଧୀରେ ପିଙ୍ଗଳ ବର୍ଣ୍ଣ ଧାରଣ କରି ରାକ୍ଷସ ଦାନବଙ୍କ ନିଧନ ସକାଶେ ସଦା ଜାଗ୍ରତ । କିନ୍ତୁ ଗୋ ମମତାମୟୀ ସନ୍ତାନ ବତ୍ସଳା ମା' ! ତୋ' ନିକଟରେ ପଶୁ ପ୍ରବୃତ୍ତିର ସମର୍ପଣର ମାନେ କ'ଣ ପଶୁ ହତ୍ୟା ? ହେ ମା' ଜଗତ ଜନନୀ ! ଜଗତର ଜନନୀ ହୋଇ ତୁ ଏଇଆ ଚାହୁଁ ? ନିଜ ସନ୍ତାନର ରକ୍ତ ! ପଶୁତ୍ୱର ବଳି – ପଶୁବଳୀ ନୁହେଁ । କୁସଂସ୍କାରାଚ୍ଛନ୍ନ ତୋ'ରି ସନ୍ତାନ ଏହାର ଯଥାର୍ଥ ଅର୍ଥ ନଜାଣିପାରି ତୋ'ନିକଟରେ କି ଅପକର୍ମ କରି ଚାଲିଛି !! ତାକୁ ଟିକିଏ ମହତ୍ ପଥକୁ ଫେରାଇ ଆ'ଣ ମା' । ପ୍ରକୃତିର ଯଥାର୍ଥ ପୂଜା ହେଉ । ତୋ ଶକ୍ତିର ମହିମା ଫୁଟି ଉଠୁ ।

ପୁଷ୍ପ କଳା ବିଭାଗ,
ଡ଼ି: ଏ: ଭି: ପବ୍ଲିକ୍ ସ୍କୁଲ୍,
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୧୬ ।

# ଜଗତ ଜନନୀ ମାଆ

ଶ୍ରୀ ସତୀଶ ପାଢ଼ୀ

ଜଗତର ହିତେ       ଜଗତେ ବୋଲାଉ
    ଜଗତ ଜନନୀ ମାଆ
ଜଗତ କାରଣେ       ଜଗିଛୁ ଜଗତ
    ଜନ ହିତେ ହୋଇ ସାହା ।୧।

ଦୁର୍ଗତି କାଳରେ       ଗଢ଼ି ଦେଇ ଥାଉ
    ଦୁର୍ଗତି ନାଶିନୀ ହୋଇ
ଜୟ ମା' ଦୁର୍ଗା       ଦୁର୍ଗତି ନାଶିନୀ
    ଜୟ ମା' ମହାମାୟୀ ।୨।

ମହା ଅନଳରୁ       ମହା ତେଜ ନେଇ
    ଜନମିଲୁ ମହାମାୟୀ
ମହା ବଳିଆର       ମହିଷାସୁରକୁ
    ବଧି ଶାନ୍ତ କଲୁ ମହୀ ।୩।

ପ୍ରଜାନୁରଞ୍ଜନ       ପ୍ରଭୁ ରଘୁରାଣ
    ସେବିଲେ ତୋ ଶ୍ରୀଚରଣ
ତୋ କରୁଣା ନେଇ       କରୁଣା ସାଗର
    ରଣେ ବଧିଲେ ରାବଣ ।୪।

ମଲା ସେ ମହିଷା       ମଲା ଦଶାନନ
    ମଲେ ସିନା ଦୈତ୍ୟଗଣ
ଏ ଯୁଗ ମାନବ       ଦାନବଠୁଁ ବଳି
    ସର୍ବ ଗୁଣେ ପରିପୂର୍ଣ୍ଣ ।୫।

ଏକ ସୀତା ଲାଗି       ମଲା ଦଶାନନ
    ଲଙ୍କା ହେଲା ଛତଖିରୀ
ଏ ଯୁଗ ନୀତି ଏ       ନିତି ନିତି ହୁଏ
    ଶତ ଶତ ସୀତା ଚୋରି ।୬।

କେତେ କୁଳବଧୂ       ଥକାଳେ ମରନ୍ତି
    ଯଉତୁକ ଅନଳରେ
କିଏ ବା ବିକଳେ       ନିର୍ଯ୍ୟାତନାରେ
    ସହେ ଶାଶୁ କବଳରେ ।୭।

ଆସ ମା' ଦୁର୍ଗା       ଦୁର୍ଗତି ନାଶିନୀ
    ଦୁର୍ଗତି କର ଦୂର
ହଟାଇ ଦିଅ ମା'       ନାରୀ ନିର୍ଯ୍ୟାତନା
    ଯଉତୁକ, ବ୍ୟଭିଚାର ।୮।

ଭି. ଆଇ–୬୩, ୟୁନିଟ୍–୬, ଭୁବନେଶ୍ୱର।

# ଅବତରି ଆସ ଜଗତ ଜନନୀ

ହରିହର ନନ୍ଦ

ତୁମେ ଉମା, କାଳୀ, ଅପର୍ଣ୍ଣା, ଗଉରୀ
ଅମ୍ବିକା ଆଉ ପାର୍ବତୀ ।
ଦୁର୍ଗତି ନାଶିନୀ ମହିଷା ମର୍ଦ୍ଦିନୀ
ମହାମାୟା ଆଦି ଶକ୍ତି ॥୧॥

ଅନଳ ଗରଭୁ ଜାତ ଗୋ ଚଣ୍ଡୀକା
ସିଂହ ବାହିନୀ ହୋଇ ।
ଦେବଗଣ ଦେଲେ ଅସ୍ତ୍ର ସମୂହ
ହେଲ ପରା ଶକ୍ତିମୟୀ ॥୨॥

ତୁମ ଶକ୍ତି ବଳେ କମଳ ଲୋଚନ
ବଧ କଲେ ଦଶାନନ ।
ଯୁଗ ଯୁଗ ପାଇଁ ମହିଷାସୁରକୁ
ଭକ୍ତ ଭାବେ ଦେଲ ସ୍ଥାନ ॥୩॥

ତୁମେ ଶତରୂପା ତ୍ରିପୁର ସୁନ୍ଦରୀ
ଅନନ୍ତ ରୂପ ତୁମର ।
କେତେବେଳେ ସାଜ ନିରାକାର ଭାବେ
ହୁଅ ବି ପରା ସାକାର ॥୪॥

ହୈମବତୀ ତୁମେ ମହା ଶକ୍ତିର
ହୋଇପାର ରୂପାନ୍ତର ।
ଶୁମ୍ଭ ଓ ନିଶୁମ୍ଭ ବିନାଶ ହୋଇଲେ
ମହିମା ପରା ଅପାର ॥୫॥

ତୁମେ ନାରାୟଣୀ ସର୍ଜନାକାରିଣୀ
ସ୍ଥିତି ବି ତୁମରି କାମ ।
ତୁମେ କତ୍ୟାୟନୀ ରୁଦ୍ରାଣୀ, ରୋହିଣୀ
ସଂହାର ବି ତୁମ ଧର୍ମ ॥୬॥

ଦେବୀ ଦଶଭୁଜା ତୁମେ ଅଟ ପରା
ଭବ ସାଗରର ନାବ ।
ନାରୀ ସମାଜର କଲ୍ୟାଣ ପାଇଁ
ପୂଜା ଉପାସନା ତବ ॥୭॥

ବିଦ୍ୟା ଶାରଦା ଭାର୍ଗବୀ, ପ୍ରଭା
ତୁମେ ତ ବିଶ୍ୱ ବିଜୟୀ ।
ଅବତରୀ ଆସ ଜଗତ ଜନନୀ
ବିଶ୍ୱର ହିତ ପାଇଁ ॥୮॥

ସଭାପତି,
ଜୀବନ ସାହିତ୍ୟ ମଞ୍ଚ, ମାଇନିଂ ରୋଡ୍,
କେନ୍ଦୁଝର ଗଡ଼-୭୫୮୦୦୧ ।

# ॥ ମା ॥

ଅଧ୍ୟାପକ ଡଃ ଶଶଧର ଦାସ

ତୁମେ ଆସ ଡେଇଁ ଡେଇଁ
ଅଶ୍ୱିନର ନରମ ସକାଳ,
କାଶତଣ୍ଡୀ, ନଈପଠା, ଜହ୍ନ ଆଉ ମେଘଙ୍କର ଖେଳ ॥
ତୁମର ଆସିବା ଜାଣି
ଦ୍ୱାର ଖୋଲେ ଏ ମାଟିର ବିବର୍ଣ୍ଣ ସକାଳ
ଶରତ ରାତିର ଜହ୍ନ ବୁଡିଯାଏ ଶାଳ ବଣ ପାହାଡ଼ରେ
ଝୁରୁଥାଏ ରକ୍ତଭିଜା ମଣିଷର
ସ୍ନିଗ୍ଧ କଣ୍ଠମାଳ ॥

ଦେଖୁଛ ତ ମାଆ,
ସବୁଠି ମେଲିଛି ଡାଳ ମହିଷାସୁରର
ଦୁଃଶାସନ ଭିଡ଼ିନିଏ ଖୋଳହାଡ଼ୀ ଶାଢ଼ୀର ପଣତ
ଲୋକ ଭରି ସଭାଟାରେ ଲୁଟିଯାଏ
ନାରୀର ଇଜ୍ଜତ ॥ ଆୟୁଷ୍ମାନ ଭବିଷ୍ୟତ
କୁଶବିଦ୍ଧ ହୁଏ ପୁଣି
ଅନ୍ୟ କେଉଁ ଆତତାୟୀ ଇଶାରାରେ
ଶିଆଳୀ ଲଟାରେ ହବେ
ଡାରାର ସଙ୍ଗୀତ ॥

କିଏ ବା ପାରିବ ସହି ?
ଏ ମାଟିର ଯେତେ ଅଘଟଣ
ଯଉତୁକ ଚିତା ପରେ କନ୍ୟାର ମରଣ
ଘଡ଼ିମୁଳ ଧାଇଠାରେ ବନ୍ୟାରେ ପହଁରୁଥିବା
ବିକଳ ଜୀବନ ॥

ତମେ ଆସୁଛ ବୋଲି ଜାଣି
ଚିତା ଥିବା କାଠମାନେ ପୁଲକିତ
ବଗିଚାର ଜହ୍ନି ଫୁଲ ପରି,
ଭୀତତ୍ରସ୍ତ ନଗ୍ନ ଜନେ
ସାଧବ ବୋହୂଟି ପରି
ଗଣ୍ଡରେ ସଜାଇ ଦେହ
ତମକୁ ଡାକନ୍ତି ମାଆ !
ଆକାଶ/ବତାସ/ମାଟି/ପାଣିକୁ ଅନାଇ ॥

ତମେ ଆସ,
କାକରରେ ଭିଜିଯାଉ ତମର ଆଶିଷ
ମଣିଷ ଓଠରେ ଫୁଟୁ ସୁଖର ଗପସପ
ମହ ମହ ବାସିଯାଉ ପୃଥ୍ୱୀ ଚଉପାଶ ॥

---

ସହ ସମ୍ପାଦକ, 'ଉତ୍କଳ ପ୍ରସଙ୍ଗ',
ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର ।

# ବିମଳା କମଳମାଳା ସ୍ତୋତ୍ରମ୍

ପଣ୍ଡିତ ବେଣୁଧର ପରିଡ଼ା

ପୁରୁଷୋତ୍ତମ ଧାମ ଲସଚ୍ଚରଣାଂ
ମଣି ମଣ୍ଡିତ ହେମମୟା ଭରଣାମ୍ ।
ନିଗମାଗମ ଗୁଞ୍ଜିତ ମଂଜୁ ଗୁଣାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୧।

ଶରଣାଗତ ଶାନ୍ତି ସୁଧାଂ ସରଳାଂ
ମରଣାନ୍ତକ ତାପହରାଂ ତରଳାମ୍ ।
ତରଣାଚ୍ଛିତରୀଂ କରଣେ କୁଶଳାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୨।।

ଜଗଦୀଶ ମନୋଂଳି ସରୋଜବନୀଂ
ଜଗଦୀଶ ହିମାଂଶୁ ଶରଦ୍ର ଜନୀମ୍ ।
ସୁମନୋ ମନସୋ ଜଡ଼ତା ଶମନୀଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୩।।

ଜନତା ସକଳେପ୍ସିତ କଳ୍ପଲତାଂ
ପରମେଶ ସନାତନ ପାର୍ଶ୍ୱଗତାମ୍ ।
ପୁଳିନାବନ ନାଗର–କେଳିରତାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୪।।

କରୁଣା ବରୁଣାଳୟକାମଭୟାଂ
କମନୀୟ ତନୁଂ ରତିମୂର୍ତ୍ତି ଜୟାମ୍ ।
ଅନିଶଂ ଶୁଭଦାୟକ ନାମ ଚୟାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୫।।

କଳନୂପୁର ନିନ୍ଦିତ ଭୃଙ୍ଗରବାଂ
ରୁଚିରାଧର ନିନ୍ଦିତ ରକ୍ତ ଜବାମ୍ ।
କଟି ସୂକ୍ଷ୍ମ ମୃଦୁ କ୍ଷୀଣ ନାଭି ନବାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୬।।

ଦଳିତାଞ୍ଜନ ରଞ୍ଜିତ କେଶଧରାଂ
ସ୍ଫଟିକାକ୍ଷ ସୁଧା କଳସାହି କରାମ୍ ।
ଅରୁଣାରୁଣ ଚୀନପଟେ ରୁଚିରାଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୭।।

ନରକାର୍ଣ୍ଣବ ସନ୍ତରଣେ ତରଣୀଂ
ମନସାଂ କଳୁଷାନ୍ଧତମ ହରଣୀମ୍ ।
ନବ ଜୀବନ ପୁଣ୍ୟ ମସ୍ତୀଂ ସରଣୀଂ
ପ୍ରଣମାମି ଜଗଜ୍ଜନନୀଂ ବିମଳାମ୍ ।।୮।।

ବିମଳଂ ବିମଳା ସ୍ତୋତ୍ରଂ ଯଃ ପଠେତ୍ ସଂଯତଃ ଶୁଚିଃ ।
ଦେବୀ ତସ୍ମୈ ପରଂ ପ୍ରୀତ୍ୟା ସ୍ୱବାଞ୍ଛିତଂ ପ୍ରଯଚ୍ଛତି ।।

---

**ନୀଳାଦ୍ରୀ ଚନ୍ଦ୍ରିକା, କ୍ୱାର୍ଟର୍ସ ନଂ-ଏ/୩୦,**
**ସୁନାବେଡ଼ା, କୋରାପୁଟ-୭୬୩୦୦୨**

# ଶ୍ରଦ୍ଧାଞ୍ଜଳି

ଶ୍ରୀମତୀ ଶୁଭଲକ୍ଷ୍ମୀ ମହାନ୍ତି

କବି, ତୁମକୁ ମୁଁ କରେ ନମସ୍କାର
ନ ମୋର ଅନ୍ତର ଇଶ୍ୱର
ଣ ଲାଗି ହା–ହା–କାର
ରିଲ ବ୍ୟଥାର ଝଙ୍କାର
ମୋହିଲ ପ୍ରାଣେ ପ୍ରାଣେ

ତୁମେ ଏକ ସ୍ମୃତି–ସନ୍ଧ୍ୟା
ପ୍ରୀତି ଫଲଗୁ ଉଷାର ଆଲୋକ

ନିବ ଏ ତମସାରେ ଆଶାର ଦ୍ୟୋତକ
ଜନେର ମୁଁ କରେ ନମସ୍କାର–
ନେ ଥାଇ ନିଃସ୍ୱ ନୁହଁ
ଙ୍ଗ ତୁମେ ସୃଷ୍ଟି ଗନ୍ଧାଧର ।

ହେ ବିଦଗ୍ଧ ପଥର ସରେଇ
ଆଶ୍ରିତରେ ଆଶ୍ରା ଥାଅ ଦେଇ
ବୁଝିବି ବୁଝିନି ମୂଲ
ଝରିଯାଅ ହୋଇ ବାସି ଫୁଲ
ଝରିଯିବା ତୁମ ଧର୍ମ
ଭାଙ୍ଗିଯିବା ତନୁ ମନ

ଧର ପାଛ ନାହିଁ ବୁଝେ
ବ ଖାଲି ଆସ ରକ୍ଷା ନିଜର ଜୀବନ ।

ହେ ବିଦଗ୍ଧ ପଥର ସରେଇ
ବଞ୍ଚିବା କି ତୁମ ଧର୍ମ

ରେ ଦୃଢ଼ ଆଶ୍ରା ଦେଇ
ଯାହା ପ୍ରବଞ୍ଚିତ ହୋଇ ?

କବି ତୁମେ 'ଧୂପର କୁହେଳି
ଗୋପନରେ ତୁମେ ଅଛ ଜାଳି
ବାଧାହୀନ କଳେବର
ଆମୋଦିଲି ଅସଂଖ୍ୟ ଅନ୍ତର
ନେପଥ୍ୟରେ ଶିହରଣ
ଜଗାଇଛ, ଜାଣି ନାହିଁ ଏ ଜାତି ସନ୍ତାନ ।

ପୂଜ୍ୟ ପୂଜା ଦୂର କଥା–
ଝରିବାର ପରେ,
ଯାହା ଖାଲି ବ୍ୟର୍ଥ ଶୋକ ମନ ।

ହେ ଜାତିର ଭକ୍ତ, କୋଣାରକ
ହେ ପରମ ସାହିତ୍ୟ ପ୍ରେମିକ
ଦୂରେ ଉଡ଼ି ଯେତେ ଦୂରେ ଯାଅ
କେହି ଯଦି ନଝରାଏ ଲୁହ
କାନ୍ଦିବ ତ ସାଧବର ଝିଅ ।

ମହାନଦୀ ଜଳର କଲ୍ଲୋଳ
ମଥା ପିଟି କାହୁନିବ ଶୁଣି ଜ୍ୟୋତ୍ସ୍ନା ବିଧୌତ ଅସର
ଏ ଦେଶର ବିଲ, ବନ, ଝର
କହିବେ ତ ଏକ ସ୍ୱରେ ହେ ଚିର ସୁନ୍ଦର
ତୁମେ ତାଙ୍କ ପ୍ରାଣ ମହେଶ୍ୱର ।

ଘେନ କବି ମୋ କ୍ଷୁଦ୍ର ପ୍ରଣତି
ଘେନ କବି ଅନ୍ତର ବିନତି
ତୁମର ସେ ସ୍ୱଚ୍ଛ ଅତୀତରେ
ତୁମ ସୃଷ୍ଟି ଜ୍ୱଳନ୍ତ ସ୍ୱାକ୍ଷର
ଏ ଜାତିକୁ ନଯିବ ତ ଭୁଲି

ଦୂରେ ଦୂରେ ଯେତେ ଦୂରେ ଯାଅ
ଏ ପ୍ରାଣରେ ଜଗାଅ ପ୍ରେରଣା
ଅନେକରେ ବଞ୍ଚିବାର ମୋହ ।
ଓଡ଼ିଆର ଏହି ଶେଷ ଅଳି
ଏତିକି ଭରସା ଦିଅ
କାନ୍ଦୁ ଗିଏ ଦେଇ ଖାଲି ଅଶ୍ରୁ–ଶ୍ରଦ୍ଧାଞ୍ଜଳି ।

(ସେହିକର ସମସାମୟିକ ଭକ୍ତି ଗ୍ରନ୍ଥ ମାଧ୍ୟମରେ ମନୋଜ୍ଞ ଶ୍ରାଦ୍ଧ ଅବସରରେ ଦେଇ
ପଠିତ କବି–ଆଶାର ପୁତରେ ଲିଖିତ ।)

ପ୍ଲଟ୍ ନଂ–୫୭୭,
ଶହୀଦ ନଗର, ଭୁବନେଶ୍ୱର ।

# ।। ପାର୍ବଣ ।।

ବନପ୍ରଭା ପରିଡ଼ା

ଆଉ କେତେ ଦିନ
ଭୁଲିଥିବ ମା'
ପୁରୁଣା ପାର୍ବଣ ରୀତି
ଚିନ୍ମୟୀ ତୁମେ ମୃଣ୍ମୟୀ ସାଜି
ଖେଳୁଥିବ ଏଇ ମଣିଷ ହାତରେ
ଖେଳନା ପରି ଏମିତି ।।

ପୁରାଣର କେଉଁ ପୃଷ୍ଠାରେ,
ତୁମ ସକଳ ବୀର୍ଯ୍ୟ–ସକଳ ଶକ୍ତି
ସତେ ଅବା ଆଜି
ବନ୍ଦୀ କେତୋଟି ଅକ୍ଷରେ ।
ଜଞ୍ଜାଳି ଏଇ ମଣିଷ ଜୀବନେ
ମନୋରଞ୍ଜନ ପାଇଁ
ସେତ ଅବସର ତା'ର
ମେଣ୍ଟେଇ ନେଉଛି
ତୁମ ଅରଚନା–ପାର୍ବଣ ବ୍ୟାହି ଦେଇ
ସତେ କ'ଣ ତା'ର ଅନ୍ତର ତଳେ
ତୁମେ ଦେଖୁଛ ଆକୁଳ ଭାବ,
ତୁମ ବାତ୍ସଲ୍ୟ ଟିକେ ପାଇବାକୁ
ତେଜି ରଖୁଛି ଭକତି ଦୀପ ??

ତେବେ କାହିଁକି ଯେ ମାଆ
ନୀରବ–ନୟନେ ସହୁଛ
ଦୁନିଆରେ ଯେତେ ଦୁର୍ନୀତି ଘଟେ
ଅଶାନ୍ତ ଅଗ୍ନି ପ୍ରାଣେ ପ୍ରାଣେ ଲୁଟେ
ନିର୍ବିବାଦରେ ହସି ହସି ସବୁ ସହୁଛ ।।

ହେଲେ, ଆଉ ନୁହେଁ–
ଏବେ ଜାଗ୍ରତ ହୁଅ ଘୋର ରୂପା ତୁମେ
ଦିବ୍ୟ ଆଲୋକ ଦୁନିଆରେ ଦିଅ ଭରି
ଅବତରି ଆଣ ପରମ ଶାନ୍ତି
ପ୍ରଳୟଙ୍କାରୀ ଗୋ !
ଦୁଷ୍ଟ ସଂହାର କରି ।

ତେବେ ପାର୍ବଣ ତୁମ
ପୂର୍ଣ୍ଣ ହୋଇବ,
ପୁଣ୍ୟ ଏ ମାଟି ଆନନ୍ଦେ ଯିବ ଭରି
ବିଶ୍ୱ କଲ୍ୟାଣୀ ଗୋ ତୁମ କଲ୍ୟାଣେ
ଶାନ୍ତି ପଡ଼ିବ ଝରି ।।

ବାଉଁଶଣୀ, ଜଳପଡ଼ା,
ବେହେରାର, କଟକ ।

# ॥ ତମେ ଆସ ॥

ଡଃ ପ୍ରମୋଦ କୁମାର ଭୂୟାଁ

ତମେ ଆସ
ଗଙ୍ଗଶିଉଳିର ନରମ ନକ୍‌ସାରେ
ପାଦ ଥାପି, ଅଗିଣର ସକାଳରେ
ଭରିଦେଇ ଉଦାସ ଆଖିରେ ମୋର
ସପନର ତାରା ଫୁଲଟିଏ,
ତମେ ଆସ ॥

ତମେ ମୋର ଜୀବନ ସଙ୍ଗୀତ
ମୋ ଉତ୍ତପ୍ତ ପରାଣର ଗୀତି,
ଅସହାୟ ଅର୍ଜୁନ ମୁଁ
ଜୀବନ–ଭାରାରେ ମୋର
ଭାଙ୍ଗିଯାଏ ସକଳ ସମ୍ପତ୍ତି ॥

ପୁରାଣ ପୃଷ୍ଠାରେ ମାଆ, ତୁମ ରୂପ ଛଟା
କେତେ କେତେ ମହିମାର କଥା
ଦେଖୁନାହିଁ ଆଖି ମୋର
ଶୁଣିଅଛି ଏ ଧରା ପୃଷ୍ଠକୁ
ତମେ ଆସିବାର ବାର୍ତ୍ତା ॥

ଶଙ୍ଖ, ଘଣ୍ଟା ଧ୍ୱନି ସାଥେ
ତମେ ଆସ ପାର୍ବଣର ଶୁଭ ଲଗନରେ,
ଆନନ୍ଦ ବେଳାରେ/ଖୁସିର ମହା ଉତ୍ସବ
ପୁରେ ପୁରେ/ପ୍ରତି ହୃଦୟରେ
କାତୁରା ପୃଥିବୀ କେତେ ଚାହିଁଅଛି
ବିକଳ ଆଖିରେ ॥

ଆଜି ଏ ବେଳାରେ
ତମକୁ ପଚାରେ,
ତମେ ସତେ ଆସିବ କି ପରଶ ଦେବାକୁ
ବିଞ୍ଚି ବିଞ୍ଚି କରୁଣାର ଜାଣଦଣ୍ଡୀ ଫୁଲ
ଏ ପୃଥିବୀ ଦୁଃଖ ଦୂର ପାଇଁ
ଜୀବନରେ ଯାହା ଅଛି ସବୁ ଭିକ୍ଷା ଦେଇ
ଲୁହର ଆଖିରେ ମାଆ
ରହିଛି ମୁଁ ତୁମ ବାଟ ଚାହିଁ ॥

---

ଅଧ୍ୟାପକ,
ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ସରକାରୀ ମହାବିଦ୍ୟାଳୟ, ଅନୁଗୋଳ।
ଅନୁଗୋଳ।

# କର୍ଣ୍ଣଧାର

ଅକ୍ଷୟ କୁମାର ଜେନା

ଜୀବନର ପଥେ ପଥିକ ସିଏରେ ନିଆଗା ତାହାର ଗ୍ଲଳି
ଗ୍ଲଳି ଗ୍ଲଳି କେବେ କ୍ଲାନ୍ତି ଆସିନି, ଆସିଛି ମରଣ ଡୋଲି ।
ଡେଙ୍ଗିଛି ପାହାଡ଼ ଭାଙ୍ଗିଛି ବାଡ଼ ଲଙ୍ଘିଛି ମରୁ ସିନ୍ଧୁ
ମହା ପ୍ରାଣର ପ୍ରବାହଟିଏରେ ଜାତିର ପରାଣ ବିନ୍ଦୁ ।
କର୍ମ ମହା ପଥେ ଆସ–ମନୋରଥେ ରଥୀ ଓ ସାରଥୀ ଏକା
ଅନ୍ତରେ ବାହାରେ ବିଭୁ ଆଶ୍ୱାସରେ ପାଳିଛି କର୍ମର ଡକା ।
ମହାଭାରତର ସ୍ରୋତରେ ଭାସିଛି ପାଶୋରୀ କର୍ମ ଫଳ
ଜାଣିଛି–ମହାସ୍ୱା–ସପନ–ବେଦନା ବୁଝିପାରେ ଦିନେ କାଳ ।
ନେତାଟିଏ ପରି ନେତା
ଦୀନ–ଦୁଃଖ ତା' ବିଦାରିଛି ବୁକୁ ଭୁଲିଛି ଆପଣା ବ୍ୟଥା ।
ମଣିଛି ପୁଣ୍ୟକାରା
ଶୁଣିଛି ସତ୍ୟ ମୁକ୍ତିର ପାଇଁ ଆସାର ଧ୍ୱନୀ ଧାରା ।
ନେତା ପରି ନେତା ଟିଏ
ବ୍ୟବସ୍ଥାର ଆଗେ ଅବସ୍ଥା ଯେ ବାଗେ
ଥୋଇଛି ତା' ପରି କିଏ ?
ଏକଇ କର୍ଣ୍ଣ ଧାର
କର୍ମ ଆନୁରା ଚଲା ପଥେ–ପଥେ ଅଦେଖା ହାତର ଠାର ।
ବନ୍ଧୁ ପରି ବନ୍ଧୁ ସିଏ
ପ୍ରତି ମଣିଷର ମରମ ତଳର ଅଭୁଲା ଦରଦଟିଏ ।
ଜନମଭୂଇଁକୁ ସ୍ୱର୍ଗଠାରୁ ବଡ଼ ମଣିଛି ସେବା ହିଁ ଧର୍ମ
ମାନବ ଭିତରେ ଦେବ ଆରାଧିଛି ଦେହକୁ କରିଛି ଧନ୍ୟ ।

ଭାରତୀୟ ଷ୍ଟେଟ ବ୍ୟାଙ୍କ,
ଭଦ୍ରକ ।

# ଶହୀଦ ସ୍ତମ୍ଭ

## ଶ୍ରୀ କୃଷ୍ଣଚନ୍ଦ୍ର ରଥ

ଶୁଣ ଓଡ଼ିଶାର ପ୍ରଜାଜନବାସୀ
ପାପଡ଼ାହାଣ୍ଡିର ଇତିହାସ କୀର୍ତ୍ତି ।(୧)

ଦେଶ ସ୍ୱାଧୀନର ପାଞ୍ଚ ବର୍ଷ ପୂର୍ବେ
ଆଦିବାସୀ ଭାଇ ଏକଜୁଟ ହେଲେ,
ଫିରିଙ୍ଗି ସଙ୍ଗରେ ଖେଳିଲେ ଟକ୍କର
ତୁରୀ ନଦୀ କୂଳେ ଘଟିଲା ସମର
ପ୍ରାଣ ବଳୀ ଦେଲେ ୧୯ କୁମର ।।(୨)

ଦେଶ ଜାତି ପାଇଁ ପ୍ରାଣବଳୀ ଦେଇ
ଶହୀଦ୍ ହୋଇଲେ ଏହି ଆମ ଭାଇ ।(୩)

ମୂକସାକ୍ଷୀ ଆଜି ଶହୀଦ୍ ସ୍ତମ୍ଭଟି
ତୁରୀ ନଦୀ କୂଳେ ସୁସ୍ଥିର ଦେଉଛି ।
ପୁଷ୍ପ ଅର୍ଘ୍ୟ ଦେଇ ସମ୍ମାନ କରିବା
ଅଗଷ୍ଟ ୨୪ କେବେ ନଭୁଲିବା ।(୪)

ତେବେ ତାଙ୍କ ପ୍ରାଣ ସନ୍ତୁଷ୍ଟ ଲଭିବ
ଶହୀଦ ସ୍ତମ୍ଭର କୀରତି ବଢ଼ିବ ।(୫)

(ବିଃଦ୍ରଃ-ଦେଶ ସ୍ୱାଧୀନ ହେବା ପୂର୍ବରୁ ୧୯୪୨ ମସିହା ଅଗଷ୍ଟ ୨୪ ତାରିଖ ଦିନ ନିର୍ମମ ଗୁଳି ମାଡ଼ରେ ୧୯ ଜଣ ବିପ୍ଳବୀ ଏହି ପାପଡ଼ାହାଣ୍ଡିଠାରେ ମୃତ୍ୟୁବରଣ କରି ଶହୀଦ୍ ହୋଇଥିଲେ । ସେମାନଙ୍କର ସ୍ମୃତି ଅନୁସାରେ ତୁରୀ ନଦୀ କୂଳେ ଶହୀଦ୍ ସ୍ତମ୍ଭଟି ନିର୍ମିତ ହୋଇ ପାପଡ଼ାହାଣ୍ଡି (ନବରଙ୍ଗପୁରର ଅବିସ୍ମରଣୀୟ ସ୍ମୃତିକୀର୍ତ୍ତି ଭାବରେ ସୂଚନା ଦେଉଛି ।)

---

ମାର୍ଫତ୍-ସି. ଡି. ପି. ଓ.
ପାପଡ଼ାହାଣ୍ଡି, ନବରଙ୍ଗପୁର-୭୬୪୦୭୨

# ଦୁର୍ଗାମାତା ଦେଉ ଦେଶ ଜନତାଙ୍କୁ ଶକ୍ତି

ଡଃ ବୃନ୍ଦାବନ ପଣ୍ଡା

ଦୁର୍ଗା ମାତା ଦେଉ ଦେଶ ଜନତାଙ୍କୁ ଶକତି
ମନେ ତାଙ୍କ ଭରିଯାଉ ଦେଶ ପ୍ରେମ ନୀତି
ଦୂର ହେଉ ଦୁର୍ନୀତିର ଦୁଃଖ
ସ୍ୱାଧୀନ ସୂର୍ଯ୍ୟ ତଳେ ଭାରତୀୟ ହସି ଉଠୁ
ଦେଶ ଆଉ ବିଦେଶରେ ରହୁ ତା'ର ଟେକ ।୧।

ଧନ୍ୟ ହେଉ ଜନ୍ମ ମାଟି ଏ ଦେଶର ଜନନେତା କୋଳେ
ନେତା ନେବୁ ଲୁହ ଝରୁ ପ୍ରଜାର ବିକଳେ
ସତ୍ୟ, ଶାନ୍ତି, ପ୍ରଗତିର ପଥ–
ଖୋଲିଯାଉ ନେତା ହାତେ, ନେତା ହେଉ ସ୍ୱାର୍ଥତ୍ୟାଗୀ
ଭରି ଯାଉ ନେତା ମନେ ଜାତୀୟ ଚରିତ ।୨।

ଅହିଂସାର ଅସ୍ତ୍ର ଧରି ଦୁର୍ଗା ମାତା ପରି
ହିଂସା ଅସୁରର ହତ୍ୟା କରିବା ବିଶ୍ୱରି
ଆଗୁସାର ହେଉ ଦେଶ ନେତା ।
ନେତା ବ୍ରହ୍ମା, ନେତା ବିଷ୍ଣୁ, ନେତା ହର–ମହାଦେବ
ଦେଶ କର୍ଣ୍ଣଧାର ନେତା ହରତା କରତା ।୩।

ନେତା ଥିଲେ, ନେତା ହେବେ ଅଛନ୍ତି ନେତାଏ
ନେତାଙ୍କ ଶକତି ବଳେ ଦେଶଟି ଆଗାଏ
ନେତା ଦିଏ ମାଆର ମୁକତି ।
ଦେଖୁ ଆଜି ମା' କୋଳେ ଭାରତୀୟ ସୁଖେ ଖେଳେ
ଦୁର୍ଗା ମାତା ଦେଉ ଦେଶ ଜନତାଙ୍କୁ ଶକତି ।୪।

---

ଅଧ୍ୟକ୍ଷ,
ରାଜଧାନୀ ଆଇନ୍ ମହାବିଦ୍ୟାଳୟ,
ଭୁବନେଶ୍ୱର ।

# ଆମ୍ବ ବ୍ୟବସାୟ

* ଅଧ୍ୟାପକ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି *

ଆମ୍ବ ଏକ ସୁମିଷ୍ଟ ରସାଳ ଫଳ । ପୃଥିବୀରେ ଦେଖାଯାଉଥିବା ଫଳମାନଙ୍କ ମଧ୍ୟରେ ଆମ୍ବ ସର୍ବୋତ୍ତମ । ବର୍ଷର ପରିପୂର୍ଣ୍ଣ କଳେବର ଦେଇ ଋତୁଚକ୍ର ନିର୍ବାହିତ ସମୟରେ ପ୍ରକୃତି ରାଣୀ ନୂଆ ନୂଆ ରୂପରେ ନୂଆ ନୂଆ ରଙ୍ଗ ରୂପର ଶାଢ଼ୀ ପିନ୍ଧି ଏ ପୃଥିବୀକୁ ସ୍ୱାଗତ କରିବା ପାଇଁ ଅର୍ଘ୍ୟ ଥାଳୀରେ ନାନାଦି ସୁମିଷ୍ଟ ସୁବାସିତ ଫଳ ପୁଷ୍ପ ପତ୍ରାଦି ନେଇ ଉଭା ହୋଇଥାଏ — ଜନଜୀବନର ସେବା ପାଇଁ । ଅପୂର୍ବ ନିଦର୍ଶନ ଏ ପ୍ରକୃତିର । ଶୀତ ଋତୁର ଶେଷ ବେଳକୁ କେଉଁ ପୁଷ୍କରିଣୀ କୂଳ ଘନ ହୀଡ଼ର ଗୁଳ୍ମର ଘନପତ୍ର ବୃକ୍ଷ ଡାଳରେ ଲୁଚକାଳି ଖେଳି ଖେଳି କୋଇଲି ଟୋ'ର ଚିର ସହଚରୀ ଗ୍ରୀଷ୍ମ—ବସନ୍ତର ଆଗମନୀକୁ ସୁସ୍ୱର ଦିଏ ନିଜେ ପଞ୍ଚମ ସ୍ୱରର କୁହୁ ତାନ ତୋଳି । ମଳୟ ସମୀରଣର ସ୍ପର୍ଶ ପାଇ ନଫାଉଣୁ ବସନ୍ତ ମଞ୍ଜରୀତ ବିଶ୍ୱର ଶେଷ ରସାଳ ବୃକ୍ଷରାଜ ଆମ୍ର ତରୁବର ମୁକୁଳ ମୁକୁଳି ଯାଏ । ପୁଷ୍ପା ନକ୍ଷତ୍ରର ଶିରୀକାତର ଆମ୍ର ବୃକ୍ଷ — ବଉଳି ଯାଏ । ବଉଳ ଫୁଲର ବାସ୍ନାରେ ବାସ୍ନାୟିତ ହୋଇଯାଏ ଧରଣୀ ରାଣୀର ଦେହପ୍ରାନ୍ତ । କ୍ଷୁଦ୍ରାତିକ୍ଷୁଦ୍ର ଶିଶ୍ରି ଶ୍ୱେତ ଲୋହିତ ଆମ୍ବ ଫୁଲର ଗଜାଗିରେ ଗଛର ଶାଖା ପ୍ରଶାଖା ତରଙ୍ଗାୟିତଦୋଳାୟିତ ଉଚ୍ଛୁଳୁ ଥାଏ — ମନ୍ଦ ମଳୟର ଅବଗାହନରେ । ପଟୁଆର ବନ୍ଧେ ମଧୁମକ୍ଷୀମାନଙ୍କର ଗୁଞ୍ଜନର ମଧୁ ଶୋଷଣରେ; ଶିହରିଯାଏ — ଏ ଦେବ ଦୁର୍ଲଭ ଧରାଭୂଷଣର ଜଡ଼ଜୀବ ସମସ୍ତଙ୍କର ଦେହ ମନ — ଆମ୍ର ବଉଳର ଗନ୍ଧରେ ।

ବହୁ ପ୍ରାଚୀନ ସଂସ୍କୃତ ଗ୍ରନ୍ଥ, ପୁରାଣ, ଶତପଥ ବ୍ରାହ୍ମଣ ଓ ବିଭିନ୍ନ ଆୟୁର୍ବେଦ ଶାସ୍ତ୍ର ଚରକ ସଂହିତାରେ ଆମ୍ବର ବିଭିନ୍ନ ଦ୍ରବ୍ୟ ଗୁଣର ପ୍ରଶଂସା ବର୍ଣ୍ଣିତ । ଅମରକୋଷ ବନ ପର୍ବରେ ଆମ୍ବର ବିଭିନ୍ନ ନାମମାନଙ୍କର ଉଲ୍ଲେଖ ରହିଛି, ଯଥା—

ଆମ୍ରଃ ଚ୍ୟୋତୋରସାଳଶ୍ଚ ସହକାରୋଽତି,
କାମାଙ୍ଗୋ ମଧୁଦୂତଶ୍ଚ ମାକନ୍ଦଃ ପିକ ବଲ୍ଲଭଃ ।

ଏହା ବ୍ୟତୀତ ଆମ୍ବକୁ ଇଂରାଜୀରେ ମେଙ୍ଗୋ, ଲାଟିନ୍‌ରେ ମଞ୍ଜିଫେରା ଇଣ୍ଡିକା (Mangifera Indica), ପର୍ସୀରେ ଆମ୍ବା, ଆରବୀରେ ଅମ୍ବଜ ଏବଂ ସଂସ୍କୃତ ଭାଷାରେ ଆମ୍ର କୁହାଯାଏ । ଇଂରାଜୀରେ ଆମ୍ବର ନାମକରଣ ବିଷୟରେ ଜାଣିବାକୁ ମିଳେ ଯେ, ଯେତେବେଳେ ପର୍ତ୍ତୁଗୀଜ୍‌ମାନେ ଭାରତକୁ ବାଣିଜ୍ୟ କରିବା ପାଇଁ ଆସିଲେ — ସେମାନେ ସର୍ବ ପ୍ରଥମେ ଆମ୍ବ ସହ ପରିଚିତ ହେଲେ । ତାମିଲନାଡୁ ଉପକୂଳ ଅଞ୍ଚଳରେ ଏହି ଗଛ ଓ ଫଳକୁ ଦେଖି ଏହା କି ଫଳ ବୋଲି ପଚାରନ୍ତେ, ତାମିଲମାନଙ୍କଠାରୁ 'ମାନଗାଇ' ବୋଲି ଜାଣି ତାକୁ 'ମାନଗୋ' ଓ 'ମେନ୍‌ଗୋ' ବୋଲି ଉଚ୍ଚାରଣ କରି ମେଙ୍ଗୋ (Mango) ନାମରେ ଚିହ୍ନିଲେ । ଭାରତରୁ ପରବର୍ତ୍ତୀ ସମୟରେ ପର୍ତ୍ତୁଗୀଜ୍‌ମାନଙ୍କ ଦ୍ୱାରା ଦକ୍ଷିଣ ଆମେରିକାର ବ୍ରାଜିଲଠାରେ ବ୍ୟବସାୟିକ ଭିତ୍ତିରେ ଆମ୍ବ ଚାଷ କରାଯିବାର ସୂଚନା ମିଳେ । ଏ ଯାବତ୍ ମିଳୁଥିବା ତଥ୍ୟରୁ ଜଣାଯାଏ ଯେ, ଆମ୍ବର ଜନ୍ମସ୍ଥାନ ଭାରତ । ଭାରତର ପ୍ରଶସ୍ତ ନଦୀ ଉପତ୍ୟକାର ଉର୍ବର ପଟୁମାଟି ଜଙ୍ଗଲର କୃଷ୍ଣ ଲୋହିତ ମୃତ୍ତିକା, ପାଣି ପବନ ଆମ୍ବ ଚାଷର ଅନୁକୂଳ । ଅନ୍ୟୂନ ଖ୍ରୀ: ପୂ: ୨୦୦୦ ବର୍ଷ ତଳରୁ ଭାରତରେ ଆମ୍ବ ଉତ୍ପାଦନ ହେଉଥିବାର ପ୍ରମାଣ ରହିଛି ।

ଆମ୍ବ ଗଛରେ ବଉଳ ଓ କଷି ଧରିଲା ବେଳଠୁ ଖାଦ୍ୟ ଭାବରେ ବ୍ୟବହୃତ । ଆମ୍ବ ଗଛର ପଞ୍ଚାଙ୍ଗ (ଚୋପା, ପତ୍ର, ଫୁଲ, ଫଳ ଓ ମୂଳ) ଜୀବ ଜଗତରେ ଔଷଧ ରୂପେ ବ୍ୟବହାର ହେଉଥିବା ଆୟୁର୍ବେଦ ଶାସ୍ତ୍ରରେ ଲେଖା ଅଛି । ହିନ୍ଦୁ ସଂସ୍କୃତି ଓ ଧର୍ମ ବିଶ୍ୱାସ ଅନୁଯାୟୀ ପୌଷ ମାସର ଅମାବାସ୍ୟାକୁ 'ବଉଳ ଅମାବାସ୍ୟା' ନାମରେ ନାମିତ । ଏହି ଅମାବାସ୍ୟା ଦିନ ଗୁଡ଼ର ଚୂନାରେ ଭୁରି ଏବଂ ଖଳିରେ ଗଇଁଠା ଓ ଅଟକାଳି କରି ଦିଅଁଙ୍କ ପାଖରେ ଆମ୍ବ ବଉଳ ଦେଇ ଭୋଗ କରି ସମସ୍ତ ନରନାରୀ ଖାଦ୍ୟ ଭାବରେ ଗ୍ରହଣ କରିଥାନ୍ତି । ଏସିଆ ମହାଦେଶର ବିଭିନ୍ନ ଅଞ୍ଚଳରେ ଆମ୍ବ ଗଛର ଫୁଲ, କଞ୍ଚା ମୁକୁଳ, କଅଁଳ ପତ୍ର ମଧ୍ୟ ଖାଦ୍ୟ ଭାବରେ ଗ୍ରହଣ କରାଯାଏ । ଥାଇଲାଣ୍ଡ ଓ ଶ୍ୟାମ ଦେଶରେ ଲୋକେ ଆମ୍ବ ବଉଳକୁ ଖାଇବାକୁ ଭଲ ପାଆନ୍ତି । ଚାଇନାର ଅଧିବାସୀମାନେ କଷିଲିଆ ଆମ୍ବ ପତ୍ରକୁ ଗୁଡ଼ରେ ପକାଇ ସୁସ୍ୱାଦୁ ଜେଲି ପ୍ରସ୍ତୁତ କରିଥାନ୍ତି । ଟାକୁଆ ଭିତରର କୋଇଲିକୁ ପଟାକରି ଲୁଚି ଓ କୋଇଲିରେ ତେଲୋରୀ ମଧ୍ୟ କରି ଖାଇବା ଦେଖାଯାଏ । କଞ୍ଚା ଆମ୍ବକୁ ପୋଡ଼ି ସୁସ୍ୱାଦୁ ଏବଂ ଅତି ରୁଚିକର ପଣ ତିଆରି କରାଯାଇପାରେ ।

ଆମ୍ବ ବଉଳ କଫ, ପିତ୍ତ, ପ୍ରମେହ, ରକ୍ତ ବିକାର ଦୂର କରିଥାଏ । ଏହାର ସେବନରେ ଶରୀରର ରକ୍ତ, ମାଂସ ଓ ଶକ୍ତି ବୃଦ୍ଧି ହୁଏ । ଆମ୍ବ ରସର ବ୍ୟବହାରରେ ରକ୍ତରେ ହିମୋଗ୍ଲୋବିନ୍ ପରିମାଣ ଓ ଲୋହିତ ରକ୍ତ କଣିକାର ବୃଦ୍ଧି ଘଟାଇ ଶରୀରର ଶୌର୍ଯ୍ୟ ଓ ବୀର୍ଯ୍ୟ ବୃଦ୍ଧି କରାଇଥାଏ । ରନ୍ଧନ ପ୍ରକ୍ରିୟାରେ ଆମ୍ବ ତାହିର ଅଣି ପକାଇଲେ ରନ୍ଧନ ଖାଦ୍ୟ ଖୁବ୍ ଶୀଘ୍ର ସିଝି

ଯାଇଥାଏ । ଏଣୁ ମାଂସ ସିଝାଇବାରେ ଏହାର ଉପଯୋଗ କରାଯାଇ ରନ୍ଧନ ଖାଦ୍ୟ ଅଧିକ ଆକର୍ଷଣୀୟ ଓ ସୁବାସିତ ହୋଇଥାଏ । ଖାଦ୍ୟ ଅଧିକ ଲୁଣିଆ ଅନୁଭୂତ ହେଉଥିଲେ — ଆମ୍ବ ଅଶି (ଜେଇଁକ ପତ୍ର ସହିତ) ପ୍ରୟୋଗ କରି ଅତିରିକ୍ତ ଲବଣାଂଶ ଶୋଷି ନିଆଯାଇପାରେ । ଓଡ଼ିଶାର କୃଷୀ କୁଳ ତଥା ଓଡ଼ିଆମାନେ ପଖାଳ ଭାତରେ କଞ୍ଚା ଆମ୍ବ ଦୋରୁଅ (ଲସି) ପକାଇ ଖାଇବାକୁ ଭଲ ପାଇଥାନ୍ତି । ଆମ୍ବ ଡାଳର ଦାନ୍ତକାଠି ଏବଂ ଆମ୍ବ ପତ୍ରରେ ଦାନ୍ତ ଘଷିବାରେ ସର୍ବଦା ବ୍ୟବହାର କଲେ ଦାନ୍ତ ଶକ୍ତ ଏବଂ ପାଟିରୁ ଦୁର୍ଗନ୍ଧ ଦୂର ହୁଏ । ଫାଲ୍‌ଗୁନ ପୂର୍ଣ୍ଣିମା ତିଥି ଓ ହିନ୍ଦୁ ସଂସ୍କୃତିରେ ଦେବାଦେବୀଙ୍କ ଆରାଧନା ପାଇଁ ସଦାସର୍ବଦା ଆମ୍ବ ପତ୍ରର ମାଳ ଦୁଆର ଉପରେ ଲଗାଇବା, କୁମ୍ଭ ଘଟ ପୂଜାରେ ପଞ୍ଚ ପତ୍ରର ଆମ୍ବ ଡାଳ ଥୋଇ ନାରୀକେଳ ରଖିବା ସହ ରାଧାକୃଷ୍ଣଙ୍କ ଦୋଳିରେ ଆମ୍ବ ଡାଳ ଓ ତେମ୍ପ ସଂଯୁକ୍ତ ଆମ୍ବ ପେଣ୍ଡା ବନ୍ଧାଯାଇ କଞ୍ଚି ଆମ୍ବର ଭୋଗ ମଧ୍ୟ ଅର୍ପଣ କରାଯାଇଥାଏ । ସମସ୍ତ ପ୍ରକାର ମାଙ୍ଗଳିକ କାର୍ଯ୍ୟରେ ଆମ୍ବ ଗଛର ସର୍ବାଙ୍ଗକୁ ଅତି ପବିତ୍ର ଦେବପ୍ରିୟ ବୃକ୍ଷ ରୂପରେ ବ୍ୟବହାର କରାଯାଇଥାଏ । ଗୋଟିଏ ଜୀବନ୍ତ ଆମ୍ବ ଗଛ ପରିବେଶକୁ ପ୍ରଦୂଷଣ ମୁକ୍ତ ରଖିବାରେ ସାହାଯ୍ୟ କରି ତା'ର ଜୀବନକାଳ ମଧ୍ୟରେ ଦଶ ଲକ୍ଷ ଟଙ୍କାରୁ ଅଧିକ ମୂଲ୍ୟର ଅମ୍ଳଯାନ ଯୋଗାଇଥାଏ ।

ଆମ୍ବ ଯେ କେବଳ ଶାସ୍ତ୍ରୀୟ, ବୈଜ୍ଞାନିକ, ସ୍ୱାସ୍ଥ୍ୟ ଉପଯୋଗିକ, ବାଣିଜ୍ୟ ବିକାଶ ଓ ପବିତ୍ରତାର ପ୍ରତୀକ ଭାବରେ ବର୍ଣ୍ଣନା ରହିଛି ତାହା ନୁହେଁ, ଆମ ଭାରତବର୍ଷର ବିଭିନ୍ନ ସମୟର କବିମାନେ ମଧ୍ୟ ଆମ୍ବକୁ ନେଇ ବିପୁଳ ସାହିତ୍ୟ ରଚନା କରିଥିବା ଦେଖାଯାଇଛି । ମହାକବି କାଳି ଦାସ ରସାଳ, ସୁବାସିତ ଓ ସୁମିଷ୍ଟ ଆମ୍ବର ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି ଯେ, ପୃଥିବୀରେ ଆମ୍ବ ଭଳି ଏକ ପକ୍ୱ ରସାଳ ସ୍ୱାଦିଷ୍ଟ ଫଳର ଆବିର୍ଭାବ ହେବା ଫଳରେ ପଣସ ନିଜ ବକ୍ଷରେ ଶୂଳ ଭେଦ କଲା । ନାରୀକେଳ ଭୟ ପାଇ ତା' ଅନ୍ତର ପାଣି ବୋହିଗଲା । ଜାମୁ ଫଳ ଲଜ୍ୟାରେ ଶ୍ୟାମଳ ମଳିନ ହୋଇ ପଡ଼ିଲା, ଆଉ ଡାଳିମ୍ବ ଫଳ ଅପମାନବୋଧ କରି ନିଜ ଗର୍ଭରେ ତିଳ ଚିହ୍ନଟିଏ ଆଙ୍କି ମଧ୍ୟ ଆମ୍ବର ସମକକ୍ଷ ହୋଇ ପାରିବନି ଭାବି ନିଜ ହୃଦୟ ବିଦାରୀ ଆତ୍ମହତ୍ୟା କଲା । ଏଭଳି ଆମ୍ବକୁ ନେଇ ଅନେକ କାବ୍ୟ କବିତା ଓ ଉପମାର ସଂଳାପ ସାହିତ୍ୟିକମାନଙ୍କ ଦ୍ୱାରା ସବୁ ଯୁଗରେ ପ୍ରୟୋଗ କରାଯାଇଥାଏ ।

ପାଚିଲା ଆମ୍ବ ସ୍ୱାସ୍ଥ୍ୟ ପକ୍ଷେ ହିତକର । ଆମ୍ବରୁ ପ୍ରାୟତଃ ଚଉଅଶି ଭାଗ ପ୍ରୋଟିନ୍, ଦଶମିକ ଛଅ ଭାଗ ଲବଣ, ଦଶମିକ ତିନି ଭାଗ କାର୍ବୋହାଇଡ୍ରେଟ୍, ପ୍ରାୟ ବାର ଭାଗ କ୍ୟାଲ୍‌ସିୟମ୍ ଏବଂ ଦଶମିକ ଶୂନ ଏକ ଭାଗ ଫସ୍‌ଫରସ୍ ଓ ଶୂନ ଦୁଇ ଭାଗ ଲୌହ ମିଳିଥାଏ । ଏମିତିକି କଞ୍ଚା' ଆମ୍ବରୁ ଷୋଳିରୁ ପାଞ୍ଚ ଭାଗ ଯାଏ ଲୌହ ମହଯୁଦ୍ ଥାଏ । ପ୍ରତି ଏକଶହ ଗ୍ରାମ୍ ଆମ୍ବରେ ପାଞ୍ଚ ମିଲିଗ୍ରାମ୍ ଭିଟାମିନ୍ 'କ' ଓ 'ଗ' ରହିଛି । ତା' ସହ କିଛି ପରିମାଣରେ ସାଇଟ୍ରିକ୍ ଏସିଡ୍ ଏବଂ ଖାଦ୍ୟପ୍ରାଣ 'ଖ' ଓ 'ଘ' ମଧ୍ୟ ରହିଥିବା ବୈଜ୍ଞାନିକମାନେ କହନ୍ତି । ପ୍ରତି ଏକ ଆଉନସ୍ ଆମ୍ବ ରସ ପାନ କଲେ ପ୍ରାୟ ଏଗାର କେଲୋରୀ ଶକ୍ତି ଓ ଖାଦ୍ୟପ୍ରାଣ 'କ' କୋଡ଼ିଏ ଭାଗ ମିଳିଥାଏ । ଆମ୍ବରୁ ପ୍ରାପ୍ତ ଖାଦ୍ୟପ୍ରାଣ, ଶକ୍ତି ଶରୀରରୁ ବିଷ ଦୋଷ, ଯକୃତର ଦୁର୍ବଳତା, ରକ୍ତହୀନତା ଦୂର କରି ଶରୀରକୁ ପୁଷ୍ଟ କରେ । ଆମ୍ବ ରସରୁ ଖାଦ୍ୟପ୍ରାଣ 'ଗ' ଶରୀରରେ ରୋଗ ପ୍ରତିରୋଧକ ଶକ୍ତି, ରକ୍ତ ସଞ୍ଚାଳନ ପ୍ରକ୍ରିୟା, ଅସ୍ଥି ଓ ଦାନ୍ତର ଦୃଢ଼ତା ବୃଦ୍ଧି କରିବା ସହ ମାଂସପେଶୀ ତଥା ଟେଣ୍ଟୁଣିକୁ ଶକ୍ତ କରାଏ ।

ଭାରତରେ ଆମ୍ବ ଚାଷ ଲାଭଜନକ । ଆମ୍ବ ଉତ୍ପାଦନରେ ଭାରତ ପୃଥିବୀରେ ଅର୍ଦ୍ଧାଧିକ ଆମ୍ବ ଉତ୍ପାଦନ କରି ପ୍ରଥମ । ଭାରତରେ ମୁଖ୍ୟତଃ ଉତ୍ତର ପ୍ରଦେଶ, ଆନ୍ଧ୍ର ପ୍ରଦେଶ, ବିହାର, ଓଡ଼ିଶା ଓ କର୍ଣ୍ଣାଟକ ଆଦି ରାଜ୍ୟରେ ଆମ୍ବ ଚାଷ ଓ ଉତ୍ପାଦନ ଉଲ୍ଲେଖନୀୟ । ଆମ୍ବରୁ ଆମ୍ବୁର, ଆମ୍ବୁଲ, ସୁମଧୁର ପାନୀୟ, ଆମ୍ବସୋଡ଼ା ଆଦି ପ୍ରସ୍ତୁତ କରି ବଜାର କରାଯାଇଥାଏ । ଟାକୁଆ ରୋପଣ କରି ଆମ୍ବ ଗଛରୁ ଉନ୍ନତ ଓ ଅଧିକା ଫଳ ଉତ୍ପାଦନ ନହେବାରୁ ଉଦ୍ୟାନ୍‌ବିତ୍‌ମାନଙ୍କ ପ୍ରଚେଷ୍ଟାରେ ଉନ୍ନତ ଆମ୍ବ ଗଛର କଲମୀ କରି ଖୁବ୍ ଅଳ୍ପ ସମୟରେ ଅତ୍ୟଧିକ ଆମ୍ବ ଉତ୍ପାଦନ କରାଯାଇ ପାରିଛି । ଆମ ଦେଶର ବୈଜ୍ଞାନିକମାନେ ଗବେଷଣା କରି ଟାକୁଆ ନଥିବା ମାଂସାଳ ଆମ୍ବ ଫଳାଇବାରେ ସଫଳ ହୋଇଛନ୍ତି । ଆମ୍ବ ଏକ ଋତୁ ଭିତ୍ତିକ ଫସଲ ହୋଇଥିଲେ ବି ଏହାର ଉତ୍ପାଦନ ଓ ବାଣିଜ୍ୟ ସଦାକାଳୀନ (ବାରମାସୀ) କରିବାର ପ୍ରଚେଷ୍ଟାର ସୁଫଳ ମିଳିବାର ଆଶା କରାଯାଉଛି ।

ଓଡ଼ିଶାର ପର୍ଯ୍ୟାପ୍ତ ଜଙ୍ଗଲ ଓ ସମତଳ ଅଞ୍ଚଳ ଆମ୍ବ ଚାଷ ପାଇଁ ଅନୁକୂଳ । ସମସ୍ତ ଜିଲ୍ଲାମାନଙ୍କରେ ରାଜ୍ୟ ଉଦ୍ୟାନ ବିଭାଗର ପ୍ରଚେଷ୍ଟାରେ ଆମ୍ବ ଚାଷ ଓ ଉତ୍ପାଦନ ବୃଦ୍ଧି ପାଇବାରେ ଲାଗିଛି । ବର୍ତ୍ତମାନକୁ ପାଖାପାଖି ଏକ ଲକ୍ଷ ହେକ୍ଟର ଜମିରେ ଆମ୍ବ ଚାଷ କରାଯାଇ ପାଞ୍ଚ ଲକ୍ଷ ଟନ୍‌ରୁ ଅଧିକ ଆମ୍ବ ଉତ୍ପାଦନ କରାଯାଇ ପାରୁଛି । ବ୍ରହ୍ମପୁର, କଟକ, ଭୁବନେଶ୍ୱର, ପୁରୀ, ରାଉରକେଲା, ସମ୍ବଲପୁର ଆଦି ସହରମାନଙ୍କରେ ଆମ୍ବ କାରବାର ବର୍ଷକୁ ବର୍ଷ ବୃଦ୍ଧି ପାଇବାରେ ଲାଗିଛି । ଆମ୍ବର ଚାହିଦା ଅନୁଯାୟୀ ଓଡ଼ିଶା ସ୍ୱାବଲମ୍ବୀ ନହୋଇ ପାରିଥିବା ଯୋଗୁଁ ଆବଶ୍ୟକତାର ପ୍ରାୟ ଷାଠିଏ ଶତାଂଶରୁ ଉର୍ଦ୍ଧ୍ୱ ଚାହିଦା ପାଇଁ ଆନ୍ଧ୍ର ପ୍ରଦେଶ ଉପରେ ନିର୍ଭର କରିଥାଏ । ରାଜ୍ୟ ମଧ୍ୟରେ ଆମ୍ବ ଉତ୍ପାଦନ ବୃଦ୍ଧି ପାଇଁ ଚାଷୀମାନଙ୍କୁ ଅଧିକା ଉତ୍ସାହିତ କରିବାର ସମୟ ଆସିଛି ।

**ବାଣିଜ୍ୟ ବିଭାଗ,**
**ଗଞ୍ଜାମ ମହାବିଦ୍ୟାଳୟ, ଗଞ୍ଜାମ ।**

# ସମ୍ବାଦ ପରିକ୍ରମା

## ସାମାଜିକ ତଥା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ବର୍ଗ ଲୋକଙ୍କୁ ଦୋକାନ ଓ ବ୍ୟବସାୟ ନିମନ୍ତେ ଆର୍ଥିକ ସହାୟତା

ଓଡ଼ିଶାର ସାମାଜିକ ତଥା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ବର୍ଗର ଲୋକମାନଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ପାଇଁ ବିଭିନ୍ନ ଦୋକାନ ଓ ବ୍ୟବସାୟ କରିବା ନିମନ୍ତେ ସେମାନଙ୍କୁ ଓଡ଼ିଶା ହରିଜନ ଓ ଆଦିବାସୀ ଉନ୍ନୟନ ଅର୍ଥ ସମବାୟ ନିଗମ ପକ୍ଷରୁ ଋଣ ଆକାରରେ ସର୍ବୋଚ୍ଚ ୫୦ ହଜାର ଟଙ୍କା ଲେଖାଏ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ଏବଂ ଏଥିନିମନ୍ତେ ସମ୍ପୃକ୍ତ ବ୍ୟକ୍ତି ବିଶେଷଙ୍କଠାରୁ ମଧ୍ୟ ଦରଖାସ୍ତ ଆହ୍ୱାନ କରାଯାଇଛି । ଏ ବାବଦରେ ଆବେଦନକାରୀଙ୍କୁ ଶତକଡ଼ା ୫ ଭାଗ ଅର୍ଥ ଯୋଗାଡ଼ କରିବାକୁ ପଡ଼ିବ । ଯେଉଁ ପରିବାରର ବାର୍ଷିକ ଆୟ ସୀମା ଦାରିଦ୍ର୍ୟ ସୀମାରେଖା ତଳେ ଥିବ, ତାଙ୍କୁ ଋଣର ଶତକଡ଼ା ୬ ଭାଗ ଓ ଯେଉଁ ପରିବାରର ବାର୍ଷିକ ଆୟ ସୀମା ଦାରିଦ୍ର୍ୟ ସୀମାରେଖା ଊର୍ଦ୍ଧ୍ୱରେ ଓ ତା'ର ଦୁଇଗୁଣ ହୋଇଥିବ, ସେହି ବ୍ୟକ୍ତିଙ୍କୁ ଋଣର ଶତକଡ଼ା ନଅ ଭାଗ ସୁଧ ଦେବାକୁ ପଡ଼ିବ । ତାଙ୍କୁ ଋଣ ଓ ସୁଧ ତ୍ରୈମାସିକ କିସ୍ତିରେ ୫ ବର୍ଷ ମଧ୍ୟରେ ପରିଶୋଧ କରିବାକୁ ପଡ଼ିବ । ଏଠାରେ ସୂଚାଇ ଦିଆଯାଇପାରେ ଯେ, ଦାରିଦ୍ର୍ୟ ସୀମାରେଖାର ସର୍ବୋଚ୍ଚ ଆୟସୀମା ଗ୍ରାମାଞ୍ଚଳ ପାଇଁ ୧୧ ହଜାର ଟଙ୍କା ଓ ସହରାଞ୍ଚଳ ପାଇଁ ୧୧,୮୫୦ ଟଙ୍କା ଧାର୍ଯ୍ୟ କରାଯାଇଛି ।

ଆବେଦନକାରୀ ତାଙ୍କର ଜାତି ସମ୍ପର୍କୀୟ, ପାରିବାରିକ ଆୟ, ଶିକ୍ଷାଗତ ଯୋଗ୍ୟତା, ପୂର୍ବ ଅଭିଜ୍ଞତା ଯେବି କିଛି ଥାଏ ତାର ପ୍ରମାଣ ପତ୍ରଗୁଡ଼ିକର ନକଲ ସହ ନିର୍ଦ୍ଧାରିତ ଫର୍ମ ଅନୁଯାୟୀ ସାଧା କାଗଜରେ ସମ୍ପୃକ୍ତ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କୁ ୬-୧୦-୧୯୯୪ ତାରିଖ ମଧ୍ୟରେ ଆବେଦନ କରିବା ପାଇଁ ପରାମର୍ଶ ଦିଆଯାଇଛି । ମାତ୍ର ଆବେଦନକାରୀଙ୍କ ବୟସ ୧-୯-୧୯୯୪ ତାରିଖ ସୁଦ୍ଧା ୧୮ ବର୍ଷରୁ ଊର୍ଦ୍ଧ୍ୱ ଓ ୫୦ ବର୍ଷରୁ କମ୍ ହୋଇଥିବା ଆବଶ୍ୟକ ।

ଯେଉଁ ଦୋକାନ ଓ ବ୍ୟବସାୟ କରିବା ପାଇଁ ଋଣ ଯୋଗାଇ ଦିଆଯିବ, ସେଗୁଡ଼ିକ ହେଲା- ଅଟୋ-ରିକ୍ସା, ରିକ୍ସା, ଟିଫିନ ଦୋକାନ, ପଲିଷ୍ଟର ଓ ସୂତାଲୁଗା ବୁଣା, ଛୋଟ ଗୋଦାମ, ବାଳକଟା ସେଲୁନ୍, ମଟର ମରାମତି ଦୋକାନ, ଛୋଟ ହୋଟେଲ, ଡ୍ରାଇ କ୍ଲିନିଂ, ସାଇକେଲ ମରାମତି ଦୋକାନ, ନଳକୂପ, ଇଲେକ୍ଟ୍ରି ଓ୍ୱେଲ୍‌ଡ଼ିଂ ଦୋକାନ, ଗେଟ୍ ଗ୍ରିଲ୍ ଶିଳ୍ପ, ମାଟିପାତ୍ର ପ୍ରସ୍ତୁତି । ଏହା ବ୍ୟତୀତ ଦ୍ୱିତୀୟ ପର୍ଯ୍ୟାୟରେ ବଢ଼େଇ ଓ କୁମାର କାମ, ମାଛ ଓ ଶୁଖୁଆ ବ୍ୟବସାୟ, ଫୁଲଚାଷ, ଫଳ ବ୍ୟବସାୟ, ପାନଚାଷ, ଗୋ-ପାଳନ, ପଥର ଖୋଦେଇ, ଦେଶୀ ମଦ ଦୋକାନ, ଗୁଡ଼ି ବ୍ୟବସାୟ, ଟିଫିନ ଦୋକାନ, କଂସା ପିତଳ ବାସନ ଇତ୍ୟାଦି ଆୟକାରୀ ବ୍ୟବସାୟ ପାଇଁ ଋଣ ଯୋଗାଇ ଦିଆଯିବ ।

ଏ ସମ୍ପର୍କୀୟ ସମ୍ପୂର୍ଣ୍ଣ ବିବରଣୀ ସମ୍ପୃକ୍ତ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କ କାର୍ଯ୍ୟାଳୟରୁ ମିଳିପାରିବ ।

## ରାଜ୍ୟସ୍ତରୀୟ ପ୍ରଧାନ ମନ୍ତ୍ରୀଙ୍କ ରୋଜଗାର ଯୋଜନା କମିଟିର ତୃତୀୟ ବୈଠକ

ସମ୍ପ୍ରତି ଭୁବନେଶ୍ୱରସ୍ଥ ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସଙ୍କ ଅଧ୍ୟକ୍ଷତାରେ ରାଜ୍ୟସ୍ତରୀୟ ପ୍ରଧାନ ମନ୍ତ୍ରୀଙ୍କ ରୋଜଗାର ଯୋଜନା କମିଟିର ତୃତୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ମୁଖ୍ୟ ଶାସନ ସଚିବ ଶ୍ରୀ ଦାସ ପ୍ରଧାନ ମନ୍ତ୍ରୀଙ୍କ ରୋଜଗାର ଯୋଜନାର ସଫଳ ରୂପାୟନ ନିମନ୍ତେ ସମ୍ପୃକ୍ତ ବିଭାଗ ଏବଂ ବ୍ୟାଙ୍କମାନଙ୍କର ସକ୍ରିୟ ଭୂମିକା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ବୈଠକରେ ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ବିଶଦ ଭାବେ ଆଲୋଚନା କରାଯାଇଥିଲା ।

ଆଲୋଚନାରୁ ଜଣାଯାଇଛି ଯେ ୧୯୯୩-୯୪ ଆର୍ଥିକ ବର୍ଷରେ କେନ୍ଦ୍ର ସରକାରଙ୍କ ପକ୍ଷରୁ ୮୬୫ ଜଣଙ୍କୁ ଏହି କାର୍ଯ୍ୟକ୍ରମରେ ସାହାଯ୍ୟ ଦେବା ପାଇଁ ଲକ୍ଷ୍ୟଧାର୍ଯ୍ୟ ହୋଇଥିବା ସ୍ଥଳେ ୮୪୨ ଜଣଙ୍କର ଦରଖାସ୍ତ ମଞ୍ଜୁର କରାଯାଇଥିଲା । ସେଥିମଧ୍ୟରୁ ୧୯୯୪ ମସିହା ଅଗଷ୍ଟ ମାସ ସୁଦ୍ଧା ୩୫୪ ଜଣ ହିତାଧିକାରୀଙ୍କୁ ବିଭିନ୍ନ ବ୍ୟାଙ୍କ୍ ଜରିଆରେ ଋଣ ଆକାରରେ ୨୮୬.୦୩ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଛି ।

ସେହିପରି ୧୯୯୪-୯୫ ଆର୍ଥିକ ବର୍ଷରେ ଏହି ଯୋଜନାରେ ଲକ୍ଷ୍ୟ ଧାର୍ଯ୍ୟ ୭,୬୮୫ ଜଣଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୧୦,୨୯୭ଟି ଦରଖାସ୍ତ ମଞ୍ଜୁରୀ ପାଇଁ ବ୍ୟାଙ୍କମାନଙ୍କୁ ସୁପାରିଶ କରାଯାଇଥିବା କରାଯାଇଛି ବୋଲି ବୈଠକରେ ପ୍ରକାଶ ପାଇଥିଲା ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ଉନ୍ନୟନ କମିଶନର ଶ୍ରୀ ପ୍ୟାରୀ ମୋହନ ମହାପାତ୍ର, ଅର୍ଥ ବିଭାଗ ପ୍ରମୁଖ ସଚିବ ଶ୍ରୀ ପ୍ରସନ୍ନ କୁମାର ମିଶ୍ର, ଶିକ୍ଷା ବିଭାଗ ଶାସନ ସଚିବ ଶ୍ରୀ ଇନ୍ଦରଜିତ୍ ସିଂ ଖୁରାନା, ଗ୍ରାମ ଉନ୍ନୟନ ବିଭାଗ ଶାସନ ସଚିବ ଶ୍ରୀ ସହଦେବ ସାହୁ, ଶିକ୍ଷା ନିର୍ଦ୍ଦେଶକ ଶ୍ରୀ ଟି: ରାମଚନ୍ଦ୍ରଙ୍କ ସମେତ ବିଭିନ୍ନ ବ୍ୟାଙ୍କର ଉଚ୍ଚ ପଦସ୍ଥ ଅଧିକାରୀମାନେ ଯୋଗ ଦେଇଥିଲେ ।

## ଭୁବନେଶ୍ୱରରେ ସଫ୍‌ଟଓ୍ୱାର ଟେକ୍ନୋଲୋଜି ପାର୍କ ପ୍ରତିଷ୍ଠାର ଅଗ୍ରଗତି

ଭୁବନେଶ୍ୱରରେ ସଫ୍‌ଟଓ୍ୱାର ଟେକ୍ନୋଲୋଜି ପାର୍କ ପ୍ରତିଷ୍ଠା ନେଇ ଅନେକ ସଫ୍‌ଟଓ୍ୱାର କମ୍ପାନୀ ଆଗ୍ରହ ଦେଖାଇଛନ୍ତି ଏବଂ ଜମି ପାଇଁ ଆବେଦନ କରିଛନ୍ତି । ଉପଗ୍ରହ ଆର୍ଥ ଷ୍ଟେସନ ପ୍ରତିଷ୍ଠା ପାଇଁ କେନ୍ଦ୍ର ସରକାର ପର୍ଚ୍ଚେଜ୍ ଅର୍ଡର ଦେଇସାରିଥିବାର ମଧ୍ୟ ଜଣାପଡ଼ିଛି ।

ଇତି ମଧ୍ୟରେ ଭୁବନେଶ୍ୱର ବିମାନ ବନ୍ଦରରେ ଆମଦାନୀ-ରପ୍ତାନୀ କାରବାର ସମ୍ପର୍କୀୟ ସୁବିଧାସୁଯୋଗ (custom clearance facilities) ଭାରତ ସରକାରଙ୍କ ଅନୁମୋଦନ ଲାଭ କରିଛି । ଏଥିପାଇଁ ବେସାମରିକ ବିମାନ ଚଳାଚଳ ନିର୍ଦ୍ଦେଶାଳୟ ସଂଲଗ୍ନ ଅଟ୍ଟାଳିକାକୁ ଆବଶ୍ୟକୀୟ ମରାମତି ଓ ସମ୍ପ୍ରସାରଣ କାର୍ଯ୍ୟ ଇଡ୍‌କୋ ଦ୍ୱାରା କରାଯିବା ପାଇଁ ରାଜ୍ୟ ସରକାର ୨ ଲକ୍ଷ ଟଙ୍କା ମଞ୍ଜୁର କରିଛନ୍ତି ।

ଆର୍ଥ ଷ୍ଟେସନ ପାଇଁ ଏସ୍.ଟି.ପି: ଜରିଆରେ ଆବଶ୍ୟକ ପରିମାଣର ଜମି ଯୋଗାଇ ଦେବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆଦେଶ ପ୍ରଦାନ କରିଛନ୍ତି । ନନ୍ଦନକାନନ ରାସ୍ତାର ନାଲକୋ କଲୋନୀ ପର୍ଯ୍ୟନ୍ତ ୮୦ ଫୁଟ୍ ଚଉଡ଼ା ରାସ୍ତା ତିଆରି ପାଇଁ ନଗର ଉନ୍ନୟନ ବିଭାଗ ୧୦ ଲକ୍ଷ ଟଙ୍କା ଭୁବନେଶ୍ୱର କର୍ପୋରେସନ୍‌କୁ ଯୋଗାଇ ଦେବା ପାଇଁ ମଧ୍ୟ ମୁଖ୍ୟମନ୍ତ୍ରୀ ଆଦେଶ ଦେଇଛନ୍ତି ।

## ଛାତ୍ରୀମାନଙ୍କର ଇଞ୍ଜିନିୟରିଂ କଲେଜରେ ନାମ ଲେଖା ପାଇଁ କୋହଳ ବ୍ୟବସ୍ଥା

ମିଳିତ ପ୍ରବେଶିକା ପରୀକ୍ଷା ପରେ ରାଜ୍ୟର ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇବା ପାଇଁ ଛାତ୍ରୀମାନଙ୍କ କ୍ଷେତ୍ରରେ କୋହଳ ବ୍ୟବସ୍ଥା ପ୍ରବର୍ତ୍ତନ କରାଯିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିର୍ଦ୍ଦେଶ ଦେଇଛନ୍ତି । ଏହି ବ୍ୟବସ୍ଥା ଅନୁଯାୟୀ ଛାତ୍ରୀମାନେ ଯୁଗ୍ମ ପ୍ରବେଶିକା ପରୀକ୍ଷାରେ ଶତକଡ଼ା ୬୦ ଭାଗ ପରିବର୍ତ୍ତେ ୫୦ ଭାଗ ନମ୍ବର ରଖିଥିଲେ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇବା ପାଇଁ ଯୋଗ୍ୟ ବିବେଚିତ ହେବେ । ଯୁଗ୍ମ ପ୍ରବେଶିକା ପରୀକ୍ଷାରେ ଯୋଗ୍ୟ ବିବେଚିତ ଛାତ୍ରଛାତ୍ରୀଙ୍କ ତାଲିକାରୁ ନାମଲେଖା ଶେଷ ହେଲା ପରେ ଅବଶିଷ୍ଟ ସ୍ଥାନଗୁଡ଼ିକ ପାଇଁ ଏହି ସୁଯୋଗ ଲାଗୁହେବ ।

## ରାଜ୍ୟରେ ଜବାହର ରୋଜଗାର ଯୋଜନା ଅନ୍ତର୍ଭୁକ୍ତ ବିଭିନ୍ନ କାର୍ଯ୍ୟକ୍ରମର ଅଗ୍ରଗତି

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଜବାହର ରୋଜଗାର ଯୋଜନା ମାଧ୍ୟମରେ ଚଳିତ ଆର୍ଥିକ ବର୍ଷ(୧୯୯୪-୯୫)ରେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୪୩ କୋଟି ୮୮ ଲକ୍ଷ ୩୯ ହଜାର ଟଙ୍କା ବ୍ୟୟ କରାଯାଇ ସମୁଦାୟ ଏକ କୋଟି ୨ ଲକ୍ଷ ୮୭ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇଛି । ବ୍ୟୟ ହୋଇଥିବା ଅର୍ଥ ମଧ୍ୟରେ ଖାଦ୍ୟଶସ୍ୟ ସମେତ ଶ୍ରମିକମାନଙ୍କ ମଜୁରୀ ବାବଦରେ ୨୫ କୋଟି ୯୧ ଲକ୍ଷ ୬୪ ହଜାର ଟଙ୍କା ଏବଂ ଅଣ-ମଜୁରୀ ବାବଦରେ ବ୍ୟୟ ୧୭ କୋଟି ୯୬ ଲକ୍ଷ ୭୫ ହଜାର ଟଙ୍କା ଅନ୍ତର୍ଭୁକ୍ତ । କେବଳ ଗତ ଅଗଷ୍ଟ ମାସରେ ମଜୁରୀ ବାବଦରେ ୬ କୋଟି ୪୦ ଲକ୍ଷ ୪୭ ହଜାର ଟଙ୍କା ଓ ଅଣ-ମଜୁରୀ ବାବଦରେ ୪ କୋଟି ୮୧ ଲକ୍ଷ ୩୩ ହଜାର ଟଙ୍କା ବ୍ୟୟ ହୋଇଛି ।

ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ଏହି ଯୋଜନାରେ ସୃଷ୍ଟି ହୋଇଥିବା ଶ୍ରମ ଦିବସ ମଧ୍ୟରେ ହରିଜନ ଶ୍ରମିକଙ୍କ ନିମନ୍ତେ ୨୮ ଲକ୍ଷ ୭୩ ହଜାର ଓ ଆଦିବାସୀ ଶ୍ରମିକଙ୍କ ନିମନ୍ତେ ୩୮ ଲକ୍ଷ ୭୦ ହଜାର ଶ୍ରମ ଦିବସ ଅନ୍ତର୍ଭୁକ୍ତ । ଏହାଦ୍ୱାରା ୨୧ ଲକ୍ଷ ୬୫ ହଜାର ଭୂମିହୀନ ଶ୍ରମିକ ଓ ୩୦ ଲକ୍ଷ ୩୮ ହଜାର ମହିଳା ଶ୍ରମିକ ଉପକୃତ ହୋଇପାରିଛନ୍ତି । ଏହି କାର୍ଯ୍ୟକ୍ରମରେ କେବଳ ଗତ ଅଗଷ୍ଟ ମାସରେ ହରିଜନ ଶ୍ରମିକଙ୍କ ନିମନ୍ତେ ୫ ଲକ୍ଷ ୧୭ ହଜାର ଓ ଆଦିବାସୀ ଶ୍ରମିକଙ୍କ ନିମନ୍ତେ ୧୦ ଲକ୍ଷ ୭୭ ହଜାର ଶ୍ରମ ଦିବସ ସମେତ ୨୫ ଲକ୍ଷ ୧୯ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ତନ୍ମଧ୍ୟରୁ ଭୂମିହୀନ ଶ୍ରମିକଙ୍କ ନିମନ୍ତେ ସୃଷ୍ଟି ୪ ଲକ୍ଷ ୭୨ ହଜାର ଶ୍ରମ ଦିବସ ଓ ମହିଳା ଶ୍ରମିକଙ୍କ ନିମନ୍ତେ ସୃଷ୍ଟି ୮ ଲକ୍ଷ ୩୭ ହଜାର ଶ୍ରମ ଦିବସ ଅନ୍ତର୍ଭୁକ୍ତ ।

ଏହି ଯୋଜନାରେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ଶ୍ରମିକମାନଙ୍କୁ ସେମାନଙ୍କ ମଜୁରି ବାବଦରେ ୩୬ ଲକ୍ଷ ୪୫ ହଜାର ଟଙ୍କା ମୂଲ୍ୟର ୯୫୪ ମେଟ୍ରିକ୍ ଟନ୍ ଚାଉଳ ଓ ୧୭ ଲକ୍ଷ ୪ ହଜାର ଟଙ୍କା ମୂଲ୍ୟର ୬୪୭.୧୩ ମେଟ୍ରିକ୍ ଟନ୍ ଗହମ ଖାଦ୍ୟଶସ୍ୟ ଆକାରରେ ଯୋଗାଇ ଦିଆଯାଇଛି । କେବଳ ଗତ ଅଗଷ୍ଟ ମାସରେ ୨ ଲକ୍ଷ ୩୯ ହଜାର ଟଙ୍କା ମୂଲ୍ୟର ୧୩ ମେଟ୍ରିକ୍ ଟନ୍ ଚାଉଳ ଓ ୨୯ ହଜାର ଟଙ୍କା ମୂଲ୍ୟର ୧୧୭.୩୭ ମେଟ୍ରିକ୍ ଟନ୍ ଗହମ ଶ୍ରମିକମାନଙ୍କୁ ଯୋଗାଇ ଦିଆଯାଇଛି ।

ଏହି ଯୋଜନା ଅନ୍ତର୍ଭୁକ୍ତ 'ଇନ୍ଦିରା ଆବାସ ଯୋଜନା'ରେ ଚଳିତ ଆର୍ଥିକ ବର୍ଷରେ ଗତ ଅଗଷ୍ଟ ମାସ ଶେଷ ସୁଦ୍ଧା ୩ କୋଟି ୭୦ ଲକ୍ଷ ୬୧ ହଜାର ଟଙ୍କା ଖର୍ଚ୍ଚ କରାଯାଇ ସମୁଦାୟ ୩,୨୫୦ଟି ଗୃହର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି ଏବଂ ୬,୦୩୦ଟି ଗୃହର ନିର୍ମାଣ କାର୍ଯ୍ୟ ଚାଲୁ ରହିଛି । କେବଳ ଗତ ଅଗଷ୍ଟ ମାସରେ ୭୩ ଲକ୍ଷ ୩୫ ହଜାର ଟଙ୍କା ବ୍ୟୟରେ ୫୬୪ଟି ଇନ୍ଦିରା ଆବାସ ଗୃହର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇଛି ।

ସେହିପରି ଗତ ଅଗଷ୍ଟ ସୁଦ୍ଧା ନିଯୁକ୍ତ କୂପ ଯୋଜନାରେ ୧୯ କୋଟି ୪୩ ଲକ୍ଷ ୪୮ ହଜାର ଟଙ୍କା ବ୍ୟୟରେ ୧୦,୮୮ [illegible] ସେଥିମଧ୍ୟରୁ [illegible] ଖନନ କାର୍ଯ୍ୟ ସମ୍ପୂର୍ଣ୍ଣ [illegible]

୧୨,୭୩୨ଟି କୂପର ଖନନ କାର୍ଯ୍ୟ ଚାଲୁ ରହିଛି । କେବଳ ଗତ ଅଗଷ୍ଟ ମାସରେ ୨ କୋଟି ୨୦ ଲକ୍ଷ ୩୦ ହଜାର ଟଙ୍କା ବ୍ୟୟରେ ଖନନ କରାଯାଇଥିବା ୧,୨୨୮ଟି କୂପ ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ପଞ୍ଚାୟତିରାଜ ବିଭାଗର ମାସିକ ବିବରଣୀରୁ ଜଣାଯାଇଛି ।

## ପଞ୍ଚାୟତି ସମିତି ପୁନର୍ଗଠନ କମିଶନ୍ ବୈଠକ

ସମ୍ପ୍ରତି ମୟୂରଭଞ୍ଜ ଜିଲ୍ଲାପାଳଙ୍କ ସମ୍ମିଳନୀ କକ୍ଷରେ ପଞ୍ଚାୟତି ସମିତି ପୁନର୍ଗଠନ କମିଶନ୍‌ର ଅଧ୍ୟକ୍ଷ ଅବସରପ୍ରାପ୍ତ ବିଚାରପତି ଶ୍ରୀ କୃଷ୍ଣ ପ୍ରସାଦ ମହାପାତ୍ରଙ୍କ ଅଧ୍ୟକ୍ଷତାରେ ପଞ୍ଚାୟତ ସମିତି ପୁନର୍ଗଠନ କମିଶନ୍‌ର ବୈଠକ ଅନୁଷ୍ଠିତ ହୋଇଯାଇଛି ।

ଉକ୍ତ ବୈଠକରେ ଜିଲ୍ଲାର ପଞ୍ଚାୟତ ସମିତି ଅଧ୍ୟକ୍ଷ ସରପଞ୍ଚ ଓ ପଞ୍ଚାୟତର ସମସ୍ତ ସଭ୍ୟମାନେ ଯୋଗ ଦେଇ ବିଭିନ୍ନ ଅସୁବିଧା ସମ୍ପର୍କରେ ଲିଖିତ ଓ ମୌଖିକ ଭାବରେ କମିଶନ୍‌ଙ୍କର ଦୃଷ୍ଟିକୁ ଆଣିଥିଲେ । କମିଶନ୍ ସମସ୍ତ ବିଷୟରେ ପୁଙ୍ଖାନୁପୁଙ୍ଖ ତଦାରଖ କରି ତାଙ୍କର ନିଷ୍ପତ୍ତି ନେବେ ଏବଂ ଆବଶ୍ୟକ ସ୍ଥଳେ ସରଜମିନ୍ ତଦନ୍ତ କରିବା ସଙ୍ଗେ ସଙ୍ଗେ ବ୍ୟକ୍ତି ବିଶେଷଙ୍କ ସହିତ ଆଲୋଚନା କରିବେ ବୋଲି ଅଧ୍ୟକ୍ଷ ଜଣାଇଥିଲେ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ କମିଶନ୍‌ର ସଭ୍ୟ ଶ୍ରୀ ନିହାର ରଞ୍ଜନ ହୋତା, ଜିଲ୍ଲାପାଳ ଶ୍ରୀ ବିପିନ କୁମାର ସାକ୍‌ସେନା ଏବଂ ଜିଲ୍ଲା ଯୋଜନା ଓ ଉନ୍ନୟନ ଅଧିକାରୀ ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାହୁଙ୍କ ସମେତ ସମ୍ପୃକ୍ତ ପଦସ୍ଥ ଅଧିକାରୀମାନେ ଯୋଗ ଦେଇଥିଲେ ।

## ରାଜ୍ୟରେ ଅଗଷ୍ଟ ମାସ ସୁଦ୍ଧା ୧,୮୮୦ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପିତ

ଚଳିତ ଆର୍ଥିକ ବର୍ଷ (୧୯୯୪-୯୫)ରେ ଗତ ଅଗଷ୍ଟ ମାସ ସୁଦ୍ଧା ରାଜ୍ୟରେ ୧,୮୮୦ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଛି । କେବଳ ଗତ ଅଗଷ୍ଟ ମାସରେ ସ୍ଥାପିତ ୪୬ଟି ପ୍ଲାଣ୍ଟ ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ।

ଗତ ଅଗଷ୍ଟ ମାସ ସୁଦ୍ଧା ସମ୍ବଲପୁର ଜିଲ୍ଲାରେ ସର୍ବାଧିକ ୨୩୩ଟି, ବରଗଡ଼ ଜିଲ୍ଲାରେ ୮୮୦ଟି ଓ ଗଞ୍ଜାମ ଜିଲ୍ଲାରେ ୧୧୧ଟି ପ୍ଲାଣ୍ଟ ସ୍ଥାପିତ ହୋଇଥିବା ବେଳେ କଟକ ଜିଲ୍ଲାରେ ୬୧ଟି, ଯାଜପୁର ଜିଲ୍ଲାରେ ୬୧ଟି, ସୁନ୍ଦରଗଡ଼ ଓ ମୟୂରଭଞ୍ଜ ଜିଲ୍ଲାରେ ୫୧ଟି ଲେଖାଏଁ, ବଲାଙ୍ଗୀର ଜିଲ୍ଲାରେ ୪୯ଟି, ଖୋର୍ଦ୍ଧା ଜିଲ୍ଲାରେ ୪୭ଟି, ବାଲେଶ୍ୱର ଜିଲ୍ଲାରେ ୪୫ଟି, ନୂଆପଡ଼ା ଜିଲ୍ଲାରେ ୪୧ଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୪୦ଟି, ଅନୁଗୁଳ ଓ ପୁରୀ ଜିଲ୍ଲାରେ ୩୭ଟି ଲେଖାଏଁ, ମାଲକାନଗିରି ଜିଲ୍ଲାରେ ୨୭ଟି, ଜଗତସିଂହପୁର ଜିଲ୍ଲାରେ ୨୭ଟି, କେନ୍ଦ୍ରାପଡ଼ା ଜିଲ୍ଲାରେ ୧୭ଟି, ନୟାଗଡ଼ ଜିଲ୍ଲାରେ ୧୭ଟି, ଫୁଲବାଣୀ ଜିଲ୍ଲାରେ ୨୭ଟି, ନବରଙ୍ଗପୁର ଓ ଦେବଗଡ଼ ଜିଲ୍ଲାରେ ୧୧ଟି ଲେଖାଏଁ, କୋରାପୁଟ ଜିଲ୍ଲାରେ ୭ଟି, ରାୟଗଡ଼ା ଜିଲ୍ଲାରେ ୫ଟି ଓ ଢେଙ୍କାନାଳ ଜିଲ୍ଲାରେ ଗୋଟିଏ ପ୍ଲାଣ୍ଟ ସ୍ଥାପନ କରାଯାଇଛି ।

## ଜନସଂଖ୍ୟା ନିୟନ୍ତ୍ରଣ କ୍ଷେତ୍ରରେ ଗଣ ମାଧ୍ୟମଗୁଡ଼ିକର ସମନ୍ୱୟ ଉପରେ କର୍ମଶାଳା

୨୦୦୦ ମସିହା ସୁଦ୍ଧା ଜନସଂଖ୍ୟା ନିୟନ୍ତ୍ରଣ ଓ ପାରିବାରିକ ସ୍ୱାସ୍ଥ୍ୟରେ ଉନ୍ନତି ଘଟାଇବା ପାଇଁ ବିଭିନ୍ନ ଗଣମାଧ୍ୟମଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରି ପ୍ରଚାର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ଉଦ୍ଦେଶ୍ୟରେ ସମ୍ପ୍ରତି ରାଜ୍ୟ ସୂଚନା, ଶିକ୍ଷା ଓ ସଞ୍ଚାର କେନ୍ଦ୍ରଠାରେ ଏକ ଦିନିକିଆ କର୍ମଶାଳାର ଆୟୋଜନ କରାଯାଇଥିଲା । ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ପ୍ରତିଷ୍ଠାନ ପକ୍ଷରୁ ଆୟୋଜିତ ଏହି କର୍ମଶାଳାରେ ଅଧ୍ୟକ୍ଷତା କରି ଏହାର ନିର୍ଦ୍ଦେଶକ ଶ୍ରୀ ବିଜୟ କୁମାର ସା ଏହି କର୍ମଶାଳାର ଆଭିମୁଖ୍ୟ ସମ୍ପର୍କରେ ବୁଝାଇବା ସଙ୍ଗେ ସଙ୍ଗେ ଏ ଦିଗରେ ବିଭିନ୍ନ ଗଣ ମାଧ୍ୟମ ଏବଂ କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ପ୍ରଚାର ବିଭାଗ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଅନବରତ ବଢ଼ୁଥିବା ଜନସଂଖ୍ୟା ରୋକିବା ନିମନ୍ତେ ଆବଶ୍ୟକ ହେଉଥିବା ପରିବାର ନିୟୋଜନ ଉପାୟଗୁଡ଼ିକ ସମ୍ପର୍କରେ ଲୋକମାନଙ୍କୁ ପ୍ରବର୍ତ୍ତାଇବା ପାଇଁ ସ୍ୱାସ୍ଥ୍ୟ ବିଭାଗର ଜିଲ୍ଲାସ୍ତରୀୟ ଗଣଶିକ୍ଷା ଓ ସୂଚନା ଅଧିକାରୀମାନଙ୍କୁ ପ୍ରତ୍ୟେକ ଜିଲ୍ଲା ଦାୟିତ୍ୱରେ ରଖିବା, ଗ୍ରାମାଞ୍ଚଳରେ ସମନ୍ୱିତ ପ୍ରଚାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ସଙ୍ଗୀତ ଓ ନାଟକ କାର୍ଯ୍ୟକ୍ରମ ଜରିଆରେ ଛୋଟ ପରିବାରର ଆବଶ୍ୟକତା ତଥା ଉପକାରିତା ଏବଂ ଲୋକମାନଙ୍କୁ ଯୋଗାଇ ଦିଆଯାଉଥିବା ବିଭିନ୍ନ ସ୍ୱାସ୍ଥ୍ୟସେବା ସମ୍ପର୍କରେ ଅବଗତ କରାଇବା ଆଦି ବିଷୟରେ ଏହି କର୍ମଶାଳାରେ ଆଲୋଚନା କରାଯାଇଥିଲା । ଏହା ବ୍ୟତୀତ ଦୂରଦର୍ଶନ ଓ ରେଡ଼ିଓ ମାଧ୍ୟମରେ ମଧ୍ୟ ସଚେତନତା ସୃଷ୍ଟି କରିବା ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା ।

ଏହି କର୍ମଶାଳାରେ ଅନ୍ୟମାନଙ୍କ ମଧ୍ୟରେ କେନ୍ଦ୍ର କ୍ଷେତ୍ର ପ୍ରଚାର ସଂସ୍ଥାର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଜି: ଦଣ୍ଡ, ଦୂରଦର୍ଶନର ସହକାରୀ କେନ୍ଦ୍ର ନିର୍ଦ୍ଦେଶକ ଶ୍ରୀ ଆର: ପ୍ରଧାନୀ, ୟୁନିସେଫର ସ୍ୱାସ୍ଥ୍ୟ ବିଭାଗ ପ୍ରକଳ୍ପ ଅଧିକାରୀ ଡଃ ଆଣ୍ଟୋନୀ, ଗଞ୍ଜାମର ଅତିରିକ୍ତ ମୁଖ୍ୟ ଜିଲ୍ଲା ଚିକିତ୍ସାଧିକାରୀ ଡଃ କେ: ନିର୍ମଳା କୁମାରୀ, ସୂଚନା ଓ ଲୋକ ସମ୍ପର୍କ ବିଭାଗର ସୂଚନା ଅଧିକାରୀ ଶ୍ରୀ ଗଗନ ବିହାରୀ ପାଣିଗ୍ରାହୀ ଓ ଶ୍ରୀ ପଦ୍ମଲୋଚନ ମୁର୍ମୁଙ୍କ ସମେତ ପି.ଆଇ.ବି.ର ପ୍ରତିନିଧି ଏବଂ ଢେଙ୍କାନାଳ, ଗଞ୍ଜାମ ଓ ପୁରୀ ଜିଲ୍ଲାର ଗଣଶିକ୍ଷା ସୂଚନା ଅଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ମାସ୍ ଏଜୁକେଶନ୍ ମେଡ଼ିଆର ଉପ ନିର୍ଦ୍ଦେଶକ ଡଃ (ଶ୍ରୀମତୀ) ଶଶିରେଖା ପଟ୍ଟନାୟକ ପାରମ୍ଭରେ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ଶେଷରେ ସ୍ୱାସ୍ଥ୍ୟଶିକ୍ଷା ଅଧିକାରୀ ଶ୍ରୀ ଶିଶିର ଚନ୍ଦ୍ର ପରିଡ଼ା ଧନ୍ୟବାଦ ଅର୍ପଣ କରିଥିଲେ ।

## ରବି ଋତୁରେ ଅଧିକ ଅମଳ ଉପରେ ସରକାରଙ୍କ ଗୁରୁତ୍ୱ

ଚଳିତ ବର୍ଷ ରବି କାର୍ଯ୍ୟକ୍ରମରେ ହାତକୁ ନିଆଯାଇଥିବା ବ୍ୟାପକ କୃଷି ତଥା ଫଳ ଓ ପନିପରିବା ଉତ୍ପାଦନ ଯୋଜନାକୁ ,

ସଫଳ କରିବା ପାଇଁ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଶ୍ରୀ ରାଜ କିଶୋର ଭୁଜବଳ ସମ୍ପୃକ୍ତ ପଦାଧିକାରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ସଚିବାଳୟ ତୃତୀୟ ମହଲା ସମ୍ମିଳନୀ କକ୍ଷରେ କୃଷି ବୈଷୟିକ କମିଟି ବୈଠକରେ ଅତିରିକ୍ତ ମୁଖ୍ୟ ଶାସନ ସଚିବ ଅଧ୍ୟକ୍ଷତା କରି କହିଲେ ଯେ ବର୍ତ୍ତମାନ ରାଜ୍ୟରେ ୭୫ ଭାଗ ଲୋକ କୃଷି ଉପରେ ନିର୍ଭର କରୁଛନ୍ତି । ଚଳିତ ବର୍ଷ ରାଜ୍ୟରେ ଲଗାତାର ବର୍ଷା ଓ ବନ୍ୟା ଫଳରେ ଖରିଫ୍ ଚାଷର ବ୍ୟାପକ କ୍ଷୟକ୍ଷତି ହୋଇଛି । ଏହାକୁ ସୁଧାରିବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଆର୍ଥିକ ମାନଦଣ୍ଡକୁ ବୃଦ୍ଧି କରିବା ପାଇଁ ରବିଚାଷ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ଚଳିତ ଖରିଫ୍ କାର୍ଯ୍ୟକ୍ରମରେ ୮୯.୯ ଲକ୍ଷ ଟନ୍ ଖାଦ୍ୟଶସ୍ୟ ଉତ୍ପାଦନ କରିବାର ଲକ୍ଷ୍ୟ ରଖାଯାଇଛି । ସେଥିମଧ୍ୟରୁ ୭୭.୦୫ ଲକ୍ଷ ଟନ୍ ବାଜରା ଜାତୀୟ ଶସ୍ୟ, ୧୨.୯୨ ଲକ୍ଷ ଟନ୍ ହେଉଛି ଡାଲିଜାତୀୟ ଶସ୍ୟ ।

୧୯୯୩-୯୪ ରବିଋତୁରେ ୬୬.୧୦ ଲକ୍ଷ ଟନ୍ ଧାନ ଅମଳ କରାଯାଇଥିବା ବେଳେ ଚଳିତ ବର୍ଷ ରବିଋତୁରେ ୭୬.୬୫ ଲକ୍ଷ ଟନ୍ ଧାନ ଅମଳ କରିବାକୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଚଳିତ ବର୍ଷ ରବିଋତୁରେ ୮ ହଜାର ଲକ୍ଷ ଗାଣ୍ଠି ତୁଳା ୨୬ ହଜାର ଲକ୍ଷ ଗାଣ୍ଠି ଝୋଟ, ୩୮ ଲକ୍ଷ ଟନ୍ ଆଖୁ ଅମଳ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ।

୧୯୯୪ ଖରିଫ୍ କାର୍ଯ୍ୟକ୍ରମର ଉପଯୋଗିତାକୁ ବିଶ୍ଳେଷଣକୁ ନେଇ ଏବଂ ମୃତ୍ତିକାର ଆର୍ଦ୍ରତାକୁ ଦୃଷ୍ଟିରେ ରଖି ୧୯୯୪-୯୫ ରବି କାର୍ଯ୍ୟକ୍ରମ ସ୍ଥିର କରାଯାଇଛି । ଏହି କାର୍ଯ୍ୟକ୍ରମରେ ଡାଲି ଓ ତୈଳବୀଜ ଶସ୍ୟର ଉତ୍ପାଦନ ଉପରେ ଗୁରୁତ୍ୱ ଦିଆଯାଇଛି । ଏଥି ମଧ୍ୟରେ ୩ ଲକ୍ଷ ୨୦ ହଜାର ହେକ୍ଟର ଜମିରେ ବାଜରା ଜାତୀୟ ଶସ୍ୟ, ୧୫ ଲକ୍ଷ ହେକ୍ଟର ଜମିରେ ଡାଲି ଜାତୀୟ ଶସ୍ୟ ୬ ଲକ୍ଷ ୬୦ ହଜାର ହେକ୍ଟର ଜମିରେ ତୈଳବୀଜ ଏବଂ ୫୦ ହଜାର ହେକ୍ଟର ଜମିରେ ଅନ୍ୟାନ୍ୟ ବ୍ୟବସାୟିକ ଶସ୍ୟ ଚାଷ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଧାର୍ଯ୍ୟ ଲକ୍ଷ୍ୟ ଅନୁସାରେ ୧୯୯୪-୯୫ ରବିଋତୁରେ ୭ ଲକ୍ଷ ୨୭ ହଜାର ଟନ୍ ବାଜରା ଜାତୀୟ ଶସ୍ୟ, ୮ ଲକ୍ଷ ୫୦ ହଜାର ଟନ୍ ଡାଲି, ୬ ଲକ୍ଷ ୫୦ ହଜାର ଟନ୍ ତୈଳବୀଜ, ୩ ଲକ୍ଷ ୮୦ ହଜାର ଟନ୍ ଅନ୍ୟାନ୍ୟ ବ୍ୟବସାୟିକ ଫସଲ ଉତ୍ପାଦିତ ହେବ ।

ଏହି ଚାଷ କାର୍ଯ୍ୟକ୍ରମର ସଫଳତା ପାଇଁ ବିଭିନ୍ନ ପ୍ରକାରର ଜଳସେଚନ ଯୋଜନାରୁ ମିଳୁଥିବା ଜଳର ସଦୁପଯୋଗ, କୃଷି, ଜଳବାୟୁ ସମ୍ବନ୍ଧୀୟ ବିଭିନ୍ନ ଅଞ୍ଚଳର ବିଭାଗ ଏବଂ ସାର, ବିହନ, ଋଣ ଯୋଗାଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି ।

ଏହି ବୈଠକରେ କୃଷି ବିଭାଗ ଶାସନ ସଚିବ ଶ୍ରୀ ଏନ୍.ସି. ବାସୁଦେବନ୍ ଓ ଜଳ ସମ୍ପଦ ବିଭାଗ ଶାସନ ସଚିବ ଶ୍ରୀ ମଦନ ମୋହନ ମହାନ୍ତିଙ୍କ ସମେତ କୃଷି, ଉଦ୍ୟାନ ଓ ମୃତ୍ତିକା ସଂରକ୍ଷଣ ବିଭାଗର ନିର୍ଦ୍ଦେଶକ ବୃନ୍ଦ, ବିଭିନ୍ନ ଜିଲ୍ଲାର ଜିଲ୍ଲାପାଳ, କୃଷି ବିଭାଗର ଉପ ନିର୍ଦ୍ଦେଶକ ବୃନ୍ଦ, ଜଳ ସମ୍ପଦ ବିଭାଗ ମୁଖ୍ୟ ଯନ୍ତ୍ରୀ ଏବଂ ଅନ୍ୟାନ୍ୟ ସମ୍ପୃକ୍ତ ପଦାଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## କୃଷି ଉତ୍ପାଦନ ବୃଦ୍ଧି ପାଇଁ ଉନ୍ନତ କିସମର ବିହନର ଉପଯୋଗ ଉପରେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱ

ଉନ୍ନତ କିସମର ବିହନ ଉପଯୋଗ ଦ୍ୱାରା ରାଜ୍ୟରେ କୃଷି ଓ ପନିପରିବା ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଅଧିକ ଉତ୍ପାଦନ କ୍ଷମ ସଙ୍କର ଜାତୀୟ ବିହନର ବ୍ୟାପକ ବ୍ୟବହାର ପାଇଁ ଚାଷୀମାନଙ୍କୁ ପ୍ରବର୍ତ୍ତାଇବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବିଭାଗୀୟ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ସମ୍ପ୍ରତି ବିଧାନସଭା କମିଟି ଗୃହରେ କୃଷି ବିଷୟରେ ବିଧାନସଭା କମିଟି ବୈଠକ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଆଲୋଚନାର ବିବରଣୀ ଅନୁଯାୟୀ, ଗତବର୍ଷ ୩୬ ହଜାର କ୍ୱିଣ୍ଟାଲ ବିହନ ଚାଷୀମାନଙ୍କୁ ବିକ୍ରୟ କରାଯାଇଥିବା ସ୍ଥଳେ ଏ ବର୍ଷ ତାହା ୭୨ ହଜାର କ୍ୱିଣ୍ଟାଲକୁ ବୃଦ୍ଧି ପାଇଛି । ଆସନ୍ତା ବର୍ଷ ଖରିଫ୍ ଓ ରବି ଋତୁ ପାଇଁ ଦେଢ଼ ଲକ୍ଷ କ୍ୱିଣ୍ଟାଲ ବିହନ ଯୋଗାଇ ଦେବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ବର୍ଷକୁ ବର୍ଷ ବିହନ ଯୋଗାଇବାର ହାର ଦ୍ୱିଗୁଣିତ କରାଯିବ ବୋଲି ରାଜ୍ୟ ସରକାର ନିଷ୍ପତ୍ତି କରିଛନ୍ତି ।

ଦେଶ ବାହାରେ ବାସୁମତୀ ଚାଉଳର ଚାହିଦା ଯଥେଷ୍ଟ ରହିଥିବାରୁ ଚଳିତ ବର୍ଷ ଖରିଫ୍ ଋତୁରେ ୩୦୦ ଏକର ଜମି ଓ ରବି ଋତୁରେ ୯୦୦ ଏକର ଜମିରେ ବାସୁମତୀ ଧାନ ଚାଷ କରାଯିବ । ଏହି ଧାନର ବିହନ ବହୁଗୁଣିତ କରାଯାଇ ପରବର୍ତ୍ତୀ ସମୟରେ ଚାଷୀମାନେ ବ୍ୟବହାର କରିପାରିବେ । ବାସୁମତୀ ଧାନର ଚାଷ ପାଇଁ ଅବିଭକ୍ତ କଳାହାଣ୍ଡି, କୋରାପୁଟ, ବଲାଙ୍ଗୀର, ସମ୍ବଲପୁର ଜିଲ୍ଲାପରି ରାଜ୍ୟର ଆଭ୍ୟନ୍ତରୀଣ ଅଞ୍ଚଳକୁ ଚିହ୍ନିତ କରାଯାଇଛି । ଓଡ଼ିଶାରେ ସ୍ଥାନୀୟ ଭାବରେ ମିଳୁଥିବା ବାସନା ସରୁ ଧାନ ଅଧିକତର ଚାଷ କରାଯାଇ ବିଦେଶକୁ ରପ୍ତାନୀ କରିବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପରାମର୍ଶ ଦେଇଥିଲେ । ଢେଙ୍କାନାଳ ଓ କେନ୍ଦୁଝର ଜିଲ୍ଲାରେ ଚଳିତ ବର୍ଷ ବିଲାତି ବାଇଗଣ ଚାଷରେ ହାଇବ୍ରିଡ୍ ମଞ୍ଜି ବ୍ୟବହାର କରିବା ପାଇଁ ଯୋଜନା ପ୍ରସ୍ତୁତ କରାଯାଇଛି ।

ବିହନ ଉତ୍ପାଦନ ଓ ବଣ୍ଟନ ଆନ୍ଧ୍ରପ୍ରଦେଶ ଭଳି କେତେକ ରାଜ୍ୟରେ ଘରୋଇ କ୍ଷେତ୍ରରେ ସଫଳତା ସହକାରେ ଗ୍ରହଣ କରାଯାଉଥିବାରୁ ଆମ ରାଜ୍ୟରେ ମୁଖ୍ୟମନ୍ତ୍ରୀ ଉଦ୍ୟୋଗକାରୀମାନଙ୍କୁ ଏଥିପାଇଁ ଉତ୍ସାହିତ କରିବାକୁ ମତ ଦେଇଥିଲେ । ଏହାପ୍ରକାରନ ବାୟୋଟେକ୍ନୋଲୋଜି ପ୍ରୟୋଗ ଦ୍ୱାରା ଉନ୍ନତ କିସମର ଚାରା ସୃଷ୍ଟି କରିବା ପାଇଁ ରାଜ୍ୟର ଆଉ ଦୁଇଟି ସ୍ଥାନରେ ଏପରି କେନ୍ଦ୍ର ଖୋଲାଯିବ ବୋଲି ସ୍ଥିର କରାଯାଇଛି ।

ଉନ୍ନତ ଧରଣ କୃଷି ଯନ୍ତ୍ରପାତି ତିଆରି କାର୍ଯ୍ୟ ରାଜ୍ୟର ୩ଟି ଯାକ ଜିଲ୍ଲାରେ ଆରମ୍ଭ କରାଯିବ । ବର୍ତ୍ତମାନ ସାରା ରାଜ୍ୟରେ

୩୬୮ଟି ବିକ୍ରୟ କେନ୍ଦ୍ରମାଧ୍ୟମରେ କୃଷକମାନଙ୍କୁ ଉନ୍ନତ ଧରଣର କୃଷି ଯନ୍ତ୍ରପାତି ଯୋଗାଇ ଦିଆ ଯିବା ପାଇଁ ବ୍ୟବସ୍ଥା କରାଯାଇଛି ।

ରାଜ୍ୟର ଫଳଶସ୍ୟକୁ ଆଗେଇ ନେବା ପାଇଁ ବୁନ୍ଦା ଜଳସେଚନ ପ୍ରଣାଳୀ ପ୍ରୟୋଗ କରିବା ନିମନ୍ତେ ଚଳିତ ବର୍ଷ ୧୩ କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । କୃଷକମାନଙ୍କୁ ଏ ସମ୍ପର୍କରେ ବିଶେଷ ଭାବରେ ଅବହିତ କରିବା ପାଇଁ ରାଜ୍ୟର ୪ଟି ସ୍ଥାନରେ ଆଞ୍ଚଳିକ କର୍ମଶାଳାମାନ ଆୟୋଜନ କରାଯିବ ।

ପାଣି ନିଷ୍କାସନ ହୋଇ ନପାରୁଥିବା ଖାଲୁଆ ଜମିରେ ଧାନଚାଷ ସାଙ୍ଗକୁ ମାଛଚାଷ କରିବା ପାଇଁ ଏ ବର୍ଷ ୮ କୋଟି ଟଙ୍କା ବରାଦ କରାଯାଇଛି । ଏଥିପାଇଁ ନାବାର୍ଡ଼ ସହଯୋଗରେ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି । କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ଏଥିପାଇଁ ମଡେଲ୍ ପ୍ରସ୍ତୁତ କରିଛନ୍ତି ବୋଲି ବୈଠକରେ ପ୍ରକାଶ ପାଇଥିଲା ।

ଏହି ବୈଠକରେ ବିଧାୟକ ତଥା ରାଜ୍ୟ ଯୋଜନା ବୋର୍ଡ଼ ଉପାଧ୍ୟକ୍ଷ ଶ୍ରୀ ଚନ୍ଦ୍ରମାଧବ ମିଶ୍ର, ବିଧାୟକ ଶ୍ରୀ ଭରତ ଭୂଷଣ ବେମାଲ, ଅତିରିକ୍ତ ମୁଖ୍ୟଶାସନ ସଚିବ ଶ୍ରୀ ରାଜକିଶୋର ଭୁଜବଲ, କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଖଗେଶ୍ୱର ପ୍ରଧାନ, ଜଳସମ୍ପଦ ବିଭାଗର ଶାସନ ସଚିବ ଶ୍ରୀ ମଦନମୋହନ ମହାନ୍ତି, ବିଧାନସଭା ସଚିବ ଶ୍ରୀ ରଘୁନାଥ ମିଶ୍ରଙ୍କ ସମେତ କୃଷି, ଉଦ୍ୟାନ କୃଷି ଓ ମୃତ୍ତିକା ସଂରକ୍ଷଣ ବିଭାଗର ଉଚ୍ଚ ପଦସ୍ଥ ଅଫିସର ଅଂଶ ଗ୍ରହଣ କରିଥିଲେ ।

## ବାଲେଶ୍ୱର ଜିଲ୍ଲାରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ

ପରିବାରକୁ ସୀମିତ ରଖିବା ଏବଂ ଜନସଂଖ୍ୟା ବୃଦ୍ଧିକୁ ରୋକିବା ଉଦ୍ଦେଶ୍ୟରେ କାର୍ଯ୍ୟକାରୀ ହେଉଥିବା ପରିବାର ନିୟୋଜନ ଅନୁଯାୟୀ ଚଳିତ ଆର୍ଥିକ ବର୍ଷରେ ଗତ ଅଗଷ୍ଟ ମାସ ଶେଷସୁଦ୍ଧା ବାଲେଶ୍ୱର ଜିଲ୍ଲାରେ ୧,୩୬୨ ଜଣ ମହିଳାଙ୍କର ବନ୍ଧ୍ୟାକରଣ ଅସ୍ତ୍ରୋପଚାର କରାଯାଇଛି । ଏହା ବ୍ୟତୀତ ଏହି ସମୟ ମଧ୍ୟରେ ଜିଲ୍ଲାରେ ୨,୫୭୦ ଜଣ ମହିଳା ଆଇ.ୟୁ.ଡି. ପଦ୍ଧତି ଅବଲମ୍ବନ କରିଥିବା ବେଳେ ୬,୪୯୫ ଜଣ ମହିଳା "କପର-ଟି" ଏବଂ ୧,୬୬୮ ଜଣ ମହିଳା ଅନ୍ୟାନ୍ୟ ଗର୍ଭ ନିରୋଧକ ବଟିକା ବ୍ୟବହାର କରିଛନ୍ତି ।

ସେହିପରି ଏହି ସମୟ ମଧ୍ୟରେ ୧୭,୦୪୩ ଜଣ ଗର୍ଭବତୀ ମହିଳାଙ୍କୁ ଟି.ଟି., ୧୫,୪୦୧ ଜଣ ଶିଶୁଙ୍କୁ ଡି.ପି.ଟି., ୧୫,୨୨୯ ଜଣ ଶିଶୁଙ୍କୁ ପୋଲିଓ ଓ ୧୯,୩୪୧ ଜଣ ଶିଶୁଙ୍କୁ ବି.ସି.ଜି. ପ୍ରତିଷେଧକ ଟିକା ପ୍ରଦାନ କରାଯାଇଛି ।

## 'ଜାଗରଣ' ସ୍ୱେଚ୍ଛାସେବୀ ଅନୁଷ୍ଠାନ – ଏକ ପରିବାହକ

ଅବିଭକ୍ତ କୋରାପୁଟ ଜିଲ୍ଲାର ଗୁଡ଼ାରି ବ୍ଲକ୍‌ରେ ୧୯୮୧ ମସିହାଠାରୁ ଆଦିବାସୀ ଓ ଅନୁନ୍ନତ ଅଧିବାସୀମାନଙ୍କର ସର୍ବାଙ୍ଗୀନ ବିକାଶ ଲାଗି ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନ କାର୍ଯ୍ୟ କରି ଆସୁଛି । ବର୍ତ୍ତମାନ ଏହି ଗୁଡ଼ାରି ବ୍ଲକ୍ ନବଗଠିତ ରାୟଗଡ଼ା ଜିଲ୍ଲାର ଅନ୍ତର୍ଭୁକ୍ତ । ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଣ ଚେତନାର ପରିବାହକ ହିସାବରେ ଅନେକ ଉନ୍ନୟନମୂଳକ କାର୍ଯ୍ୟ ହାତକୁ ନେଇଛନ୍ତି । ଏହା ପ୍ରାଥମିକ ସ୍ତରରେ ୧୭ଟି ଗ୍ରାମକୁ ନେଇ ତା'ର କାର୍ଯ୍ୟକ୍ରମ ଆରମ୍ଭ କରିଥିଲା । ବର୍ତ୍ତମାନ ଏହାର କାର୍ଯ୍ୟ ପରିସର ଗୁଡ଼ାରି ବ୍ଲକ୍‌ର ୨୨୦ଟି ଗ୍ରାମ, ରାମନାଗୁଡ଼ା ବ୍ଲକ୍‌ର ୧୫୧ଟି ଗ୍ରାମ, ପଦ୍ମପୁର ବ୍ଲକ୍‌ର ୧୫ଟି ଗ୍ରାମ ଓ ଚନ୍ଦ୍ରପୁର ବ୍ଲକ୍‌ର ୨୫ଟି ଗ୍ରାମରେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ଆରମ୍ଭ କରାଯାଇଛି । ଏହା ବ୍ୟତୀତ ଅବିଭକ୍ତ କୋରାପୁଟ ଜିଲ୍ଲାର ୪ ଗୋଟି ନୂଆ ବ୍ଲକ୍‌କୁ ଏହାର କାର୍ଯ୍ୟକ୍ରମ ସମ୍ପ୍ରସାରିତ କରିବା ଲାଗି ପ୍ରାଥମିକ ଅନୁଧ୍ୟାନ କାର୍ଯ୍ୟ ଆରମ୍ଭ ହୋଇଛି ।

ଏହି ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନର ମୂଳ ଲକ୍ଷ୍ୟ ହେଲା ପ୍ରତ୍ୟେକ କାର୍ଯ୍ୟକ୍ରମକୁ ଗ୍ରାମ କମିଟି ମାଧ୍ୟମରେ ହାତକୁ ନେଇ ଏହାର ସଫଳ ରୂପାୟନ କରିବା । ଲୋକମାନଙ୍କର ସାମାଜିକ, ଅର୍ଥନୈତିକ ବିକାଶକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ଲୋକମାନେ କିପରି ଆତ୍ମନିର୍ଭରଶୀଳ ହୋଇ ପାରିବେ ଓ ଶିକ୍ଷା, ଆଦର୍ଶ ମାଧ୍ୟମରେ ନିଜକୁ ଚଳାଇ ନିଶା ଓ ଶୋଷଣ ମୁକ୍ତ ହୋଇ ମୁକ୍ତ ସମାଜ ଗଠନ କରି ପାରିବେ, ସେଥିପାଇଁ ଏହି ସଂସ୍ଥା ବିଶେଷ ଗୁରୁତ୍ୱ ଆରୋପ କରିଛି ।

ଏହି ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନର ସହାୟତାରେ ହାସଲ କରାଯାଇଥିବା କେତେକ ଉଲ୍ଲେଖନୀୟ ସଫଳତା ମଧ୍ୟରେ ରାମନାଗୁଡ଼ା ବ୍ଲକର ପାଲିକିଡ଼ାଙ୍ଗ କେନାଲ ତିଆରି ସଫଳତା ଏକ ବିଶେଷ ଦୃଷ୍ଟାନ୍ତ । ଏହି ପାଲକିଡ଼ାଙ୍ଗ ଗ୍ରାମର ଆଖପାଖରେ ବିଭିନ୍ନ କେନାଲ ଥିଲେ ମଧ୍ୟ ପାଲକିଡ଼ାଙ୍ଗ ଗ୍ରାମର ଅଧିବାସୀମାନେ ଚାଷ କାମ ଲାଗି ଜଳ ପାଇବା ପାଇଁ ବିଶେଷ ଅସୁବିଧାର ସମ୍ମୁଖୀନ ହେଉଥିଲେ । ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗ୍ରାମ କମିଟି ଗଠନ କରି ଏହି କାର୍ଯ୍ୟ ହାତକୁ ନେଲେ । ଏଥିରେ ମୋଟ ୧ ଲକ୍ଷ ୨୫ ହଜାର ଟଙ୍କା ଖର୍ଚ୍ଚ ହେଲା । ଆନ୍ଧ୍ର, ଓଡ଼ିଶା ସୀମାଠାରୁ ପାଲକିଡ଼ାଙ୍ଗ ଗ୍ରାମ ପର୍ଯ୍ୟନ୍ତ ଏହି କେନାଲର ଲମ୍ବ ୮ ହଜାର ଫୁଟ ଏବଂ ଓସାର ୩ ଫୁଟ ୬ ଇଞ୍ଚ ଓ ଗଭୀରତା ୩ ଫୁଟ ୬ ଇଞ୍ଚ । ୭୦ ଜଣିଆ ଲାଞ୍ଜିଆ ସୌରା ଶ୍ରମିକ ଦଳ ୨୧ ଦିନରେ ଏହି କେନାଲ ଖୋଳା କାର୍ଯ୍ୟ ସମ୍ପୂର୍ଣ୍ଣ କରିଥିଲେ । ବର୍ତ୍ତମାନ ବିନା ବାଧାରେ ପାଲକିଡ଼ାଙ୍ଗ କେନାଲରେ ଏ ଅଞ୍ଚଳର ଚାଷବାସ ଲାଗି ପର୍ଯ୍ୟାପ୍ତ ପରିମାଣରେ ଜଳ ଯୋଗାଇ ଦିଆଯାଉଛି । କମିଟିର ନିଷ୍ପତ୍ତିକ୍ରମେ ଲୋକମାନଙ୍କୁ ଏକର ପିଛା ୩୦୦ ଟଙ୍କା ଶୁଳ୍କ ଧାର୍ଯ୍ୟ କରାଯାଇଛି ।

ଜାଗରଣ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ଗ୍ରାମ କମିଟି, ଗ୍ରାମ ପାଣ୍ଠି, ଶସ୍ୟ ଭଣ୍ଡାର ବିଭିନ୍ନ ଗ୍ରାମରେ ସୃଷ୍ଟି କରାଯାଇଛି । ସମସ୍ୟା ସମାଧାନ ଲାଗି ଋଣ ଦେଣନେଣ କରିବାର ବ୍ୟବସ୍ଥା ରହିଛି । ଆୟ ନିର୍ଭରଶୀଳ ଯୋଜନାରେ ଗୁଡ଼ାରି ବ୍ଲକ୍‌ର ୫ ଜଣ ବାଳିକାଙ୍କୁ ସିଲେଇ ମେସିନ ଶିକ୍ଷା ଦିଆଯାଇଛି । ତେଲୁଗୁଡ଼ା ମହିଳା କମିଟି ତରଫରୁ ହରଡ଼ୀଗୁଣ୍ଡ ପ୍ରସ୍ତୁତ କରାଯାଉଛି । ଜଗନିଧି ବାଲିଗୁଡ଼ା ମହିଳା କମିଟି ଖଲି ସିଲେଇ କରିଛନ୍ତି । ମହିଳା କମିଟି ଛେଳି ପାଳନ କରିବା ସଙ୍ଗେ ସଙ୍ଗେ କାଇଁଶ ଚଟି ତିଆରି କରୁଛନ୍ତି । ରାମନାଗୁଡ଼ା ବ୍ଲକ୍ ଜାଟପୁଲିସ୍ ଲୋକେ ଓଲଡ଼ିବିକା କାର୍ଯ୍ୟ କରୁଛନ୍ତି । ପେଦାପାଡୁ, ଗଜାଇ ଗ୍ରାମର

ଲୋକେ ବାଉଁଶ ପାତିଆରେ ବିଭିନ୍ନ ହାତ କାମ କରି ନିଜର ଭରଣ ପୋଷଣ କରୁଛନ୍ତି । ଗୁଡ଼ାରି କୁମ୍ଭାରମାନେ ହାଣ୍ଡି ଗଢ଼ିବା କାର୍ଯ୍ୟ କରୁଛନ୍ତି । ଡିମିରିଗୁଡ଼ା, ଜଳନିଧି, ବାଲିପଙ୍ଗା, ରେଙ୍ଗୀମ ଓ କୁକାରୀ ଗାଁ ସ୍ତ୍ରୀଲୋକମାନେ ମଦହାଣ୍ଡି ଭାଙ୍ଗି ସାଙ୍ଗଠନିକ ସଫଳତା ଆଣିଛନ୍ତି । ଖେତାଗୁଡ଼ା ଓ ନୂଆଗୋଲଠା ଗ୍ରାମର ମହିଳାମାନେ ନିଜ ଗ୍ରାମରେ ନଳକୂପ ଓ କୂଆ ଖୋଳାଇବା ପାଇଁ ଦାବୀ କରି ସଫଳ ହୋଇଛନ୍ତି । କଣ୍ଡାକୁଟି, ଡିମିରିଗୁଡା, ଗାଜିଗୁଡ଼ା, ଟିପ୍ରାଗୁଡ଼ା ଓ ସମରଲେଣ୍ଡି ଇତ୍ୟାଦି ଗ୍ରାମ କମିଟି ଜବାହର କାର୍ଯ୍ୟକ୍ରମକୁ କମିଟି ଜରିଆରେ କରିବାକୁ ସକ୍ଷମ ହୋଇଛନ୍ତି ।

'ଜାଗରଣ' ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗ୍ରାମ କମିଟିକୁ ମଜବୁତ କରି ଗ୍ରାମର ସର୍ବାଙ୍ଗୀନ ବିକାଶ ଲାଗି ବିଭିନ୍ନ କାର୍ଯ୍ୟରେ ସମୀକ୍ଷାତ୍ମକ ଆଲୋଚନା କରିବାଲାଗି ପ୍ରତ୍ୟେକ ବ୍ଲକ୍‌ରୁ ସାଧାରଣ ସଭ୍ୟ ୩୫ ଜଣ, କାର୍ଯ୍ୟକାରୀ କମିଟିର ସଭ୍ୟ ୦୯ ଜଣଙ୍କୁ ନେଇଛନ୍ତି । ଏହି ସବୁ ସୁଚିନ୍ତିତ ଓ ଆଦର୍ଶ ଅଗ୍ରଗତି ଲାଗି 'ଜାଗରଣ' ଜନସାଧାରଣଙ୍କର ସହଯୋଗ କାମନା କରୁଛି ।



OGP—MP—PTS (I&PR) 33—6,000—1-11-1994

ବଡପାଙ୍ଗୁପୁରଠାରେ କୁସୁମୀ ନଦୀ ଉପରେ ନିର୍ମିତ ଏକ ସେତୁକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ଭୁବନେଶ୍ୱରଠାରେ କେନ୍ଦ୍ର ଶ୍ରମ ମନ୍ତ୍ରୀ ଶ୍ରୀ ପି. ଏ. ସାଙ୍ଗମା ପୂର୍ବ ଓ ଉତ୍ତର ପୂର୍ବାଞ୍ଚଳ ଆଞ୍ଚଳିକ ଶ୍ରମ ମନ୍ତ୍ରୀମାନଙ୍କ ସମ୍ମିଳନୀରେ ଉଦ୍‌ଘାଟନୀ ଭାଷଣ ଦେଉଛନ୍ତି ।

VOL. LI No. 3 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment




ପି: ଏମ୍: ଜି: ଛକଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରାଥମିକ ଶିକ୍ଷକମାନଙ୍କ ଏକ ସମାବେଶରେ ଉଦ୍‌ବୋଧନ ଦେଉଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-753010

